Digitized By Siddhanta eGangotri Gyaan Kosha



तथाभूत: । पृथिव्या:स्थिरत्वत्रादपरिपोषक इतिभाव: । सर्वं सहाया: स्थैर्यं तद्भृत् इति कृते अन्यस्यधर्म्मं कथमन्योवहत्विति विम्बप्रतिविम्बभाववोधनरूपा निदर्शना । भूमिपक्षे श्रीपरमेश्वरस्य भुवने नानातनूधारिणां जङ्गमाजङ्गमानामितियावत् माता जननी । सा. पक्षे नानातनूधारिणांपृथिवीग्रहनक्षत्रपर्वत महीरुहादीनां मातापरिमापक: । भूमिपक्षे दुर्वाभि: श्यामला चारु:-मनोहरा विग्रहरुचि: तनुच्छवि:यस्या: सा । सा. पक्षे दुर्वाश्यामलचारुविग्रह:—कृष्ण: तस्मिन् रुचि:—स्पृहा प्रगाढभक्तिरितियावत् यस्य स: । भूमिपक्षे विश्वम्भराख्या—विश्वम्भरानाम श्रुतिषु—श्रुत्यादिग्रन्थेषु यस्या: सा । सा. पक्षे विश्वम्भरस्य विष्णो: आख्यानां नाम्नां श्रुति:-श्रवणं येन स: । विष्णुभक्ता विष्णुनामश्रवणरताभवन्ति । श्रवणं च नवधाभक्तिप्रथमम् । सामन्त: हरिभक्तआसीत् । अत्रश्रुतिपदोपलक्षणत्वात् कीर्त्तनस्मरणादीनामपिग्रहणम् । भूमिपक्षे मङ्गलस्यतदाख्यग्रहस्य भाव:-उत्पत्ति: तस्य भाजनम् । मङ्गलस्य भूमिपुत्रत्वात् । सा. पक्षे मङ्गलभाव:—कुशलभावना तस्य भाजनम् । तस्यमनसि कस्यापि अमङ्गलचिन्तास्थानं नलेभे ।

क्षुद्राक्षुद्र चलाचलापरिमितब्रह्माण्डसंधारण:
सोऽभूद्विष्णुपदाभिधानविदित:सानन्तसंज्ञ:पुन: ।
संपूज्यामरमार्ग—शब्दगुणकोऽत्यन्तोरुमानास्पदं
नित्यं खस्यसदासदागतिगतिस्तत्त्वेक्षयाकाशवत् । ८९ ।

टि— स: नित्यं खस्य—आकाशस्य तत्त्वेक्षया आकाशवत् तदाकारितचित्तवृत्तितया तद्वत् अभूत् ।
आकाशपक्षे क्षुद्राणि अक्षुद्राणि चलानि अचलानि अपरिमितानि यानि ब्रह्माण्डानि तेषां संधारणं येन स: । आकाशे सर्वेषां ब्रह्माण्डानां सत्त्वात् । सामन्तपक्षे प्रोक्तविशेषणविशिष्टेषु ब्रह्माण्डेषु संधारणा—सम्यक्वोध:यस्य स: । भूगोल—भगोल खगोल निर्णायकत्वात् । आ.पक्षे विष्णुपदाभिधानेन—विष्णुपदनाम्ना विदित.—ज्ञात: । सा. पक्षे विष्णो:पदाभिधाने पदाभिधानयो: वा विदितं—ज्ञानं यस्य स: । विदितमित्यत्र भावे क्त: ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ग्रा. पक्षे ग्रनन्तसंज्ञया—ग्रनन्तनाम्ना सहवर्त्तमानः—सानन्तसंज्ञः। "ग्रनन्तंसुरवर्त्मखम्" इत्यमरः।

सा. पक्षे ग्रनन्तसंज्ञा—प्रमीमचेतना तयासहवर्त्तमानः ग्रथवा ग्रनन्ते-ग्राकाशविषये विष्णौवा संज्ञा तया सहवर्त्तमानः । ग्राकाशतथ्य निरूपणे विष्णुभक्तौ च सचेतन इत्यर्थं ।

ग्रा.पक्षे संपूज्यानाम् ग्रमराणां—देवानां मार्गः—वर्त्म । शब्दःगुणः यस्यसःशब्दगुणकः । ततः कर्म्मधारयः । "ग्रनन्त सुरवर्त्मखम्" इत्यमरः। ग्राकाशस्य शब्दगुणकत्वं न्यायादिशास्त्रप्रसिद्धम्।

सा. पक्षे सं पूज्यः ग्रमरः—ग्रमरसिंहः तत्प्रदर्शितः यो मार्गः—शब्दसाधनापथः ग्रर्थात् ग्रमरकोषः तत्र ये शब्दाः ग्रभिधानानां शब्दकोषत्वात् तेषांगुणम्—उत्कर्षं कायति—उच्चैः रटतीत्यर्थः । कै गै रै शब्दे। ग्रातोड़ः। ग्रमरोक्तभूपर्याये ग्रचला, ग्रनन्ता, स्थिरा इत्यादि शब्दानां तेनानुमोदितत्वात्।

ग्रा. पक्षे ग्रत्यन्तमुरु—विशालं मानंपरिमाणं तस्य ग्रास्पदंस्थानम्। ग्राकाशस्यविभुत्वात् परममहत्परिमाणंवर्त्तते।

सा. पक्षे ग्रत्यन्तोरुमानस्य-ग्रत्यधिकसम्मानस्य ग्रास्पदं—पात्रम्। ग्रा. पक्षे सदा-सर्वदा सदागतेः—समीरणस्य गतिः यस्मिन् सः। "मातरिश्वासदागति" रित्यमरः।

सा. पक्षे सदा सतां साधूनां पण्डितानां वा ग्रागतिः—ग्रागमनं गतिः-गमनं च यस्मिन् सः । सामन्तस्यदर्शनाकाङ्क्षया सदा सज्जनाःपण्डिताश्च तन्निकटम्ग्रायान्ति यान्ति च केचा दूरादायान्ति केचित्स्थानीया यान्ति ।

स्वीयं मृत्युदिनं स्वयं गणनया ज्ञात्वा स यातःपुरीं
तस्मै श्रीक्षितिशैलशालिहरये विज्ञाप्यदुःखंस्वकम्।
भक्त्या तत्पुरवासकृत्प्रभुजगन्नाथाभिधानं वदन्
निर्दिष्टेऽहनि नीलचक्रकृतदृक्पातो गतः स्वःपुरीम् । ६० ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ब्रह्माण्डंजठरे प्रपश्यतियथान्तर्यामिनारायण-
स्तद्गोलं परिदृष्टवान् हृदितथाय:शास्त्रविद्यादृशा।
लोकै:सत्प्रतिभाप्रतिष्ठिततया संस्मर्यमाण: सदा
सामन्त:स्महोदयोविजयते मृत्वापिनित्य मर: । ९१ ।

ज्ञानालोकविलोकित:क्षितितले सिद्धान्तयुग्दर्पणो-
यावद् वस्तुसमर्पयिष्यति मुहु:प्रज्ञेक्षणेभ्य: सदा।
कीर्त्तिर्यस्यसजीवतीतिवचसो याथार्थ्यवादी ब्रुवे
तावत् कालघनेनसूरिसविता दृश्योऽप्यसौवर्त्तते । ९२ ।

टि— ज्ञानमेव आलोक: तद्विलोकित:। सिद्धान्तेन युज्यते इति सिद्धान्तयुक् तथाभूत: दर्पण:=सिद्धान्तदर्पण: । दर्पण: आलोकेएव दृश्यते। प्रज्ञाईक्षणं येषांतेभ्य: । सूरि:—प्रसङ्गात् सामन्तचन्द्रशेखर: सएव सविता—सूर्य: । काल:—अन्तक: सएव घन:—मेघ:तेन हेतौ तृतीया। यथासूर्य:कृष्णमेघेन हेतुना अदृश्य: सन्नपि आकाशे दीप्तिमान्वर्त्तते, कालरूपक मेघेन अदृश्य:सन्नपि सूरि:सामन्त:कीर्त्तिमान् जगति वर्त्तते। कालमेघेन हेतुना सवितु: अदृश्यत्वेऽपि दिवालोकविलोकित: दर्पण: यथा चक्षुष्मद्भ्य: वस्तु समर्पयति । कालघनेन हेतुना सूरिसवितु: चन्द्रशेखरस्य अदृश्यत्वेऽपि ज्ञानालोकविलोकित: सिद्धान्तदर्पण: प्रज्ञादृग्भ्य:. तथावस्तु समर्पयतीति उपमालङ्कार:-व्यज्यते।

सर्वस्वामिगुणान्वित: सहृदय: साधुस्वभावान्वित:
पूर्वोक्त:पृथिवीपतिर्हरिहर:प्रेम्णाप्रजापालक: ।
यत् सामन्तक चन्द्रशेखरवृहन्मुद्रालयोद्घाटनं
कृत्वा खण्डपड़ागड़े विहितवांस्तद्रक्षणावेक्षणम् । ९३ ।

तद् यन्त्रागारकार्यं भवतिजनहितं सर्वकारीयसंस्था-
न्तर्भुक्तं सुष्ठुसंपादितमुपकरणैर्युक्तमावश्यकैश्च ।
प्रत्यब्दं तद्गृहान्ते रुचिरतरसमारोहपूर्णा विशाला
सामन्तीये पवित्रेशुभजनिदिवसे गौरवाढ्यासभा च । ९४ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

तन्नाम्ना पुरुषोत्तमस्थितमहाविद्यालयः संज्ञितो-
दृश्यन्ते स्मृतिमन्दिराणि च पुनः पाठालयाः कुत्रवा ।
तैस्तस्य स्मृतिपूजनं गुणिगणाग्रण्यो ययेष्टं नकै-
र्हादुःखं न तदर्च्चनं यदिह तज्जीवद्दशायां कृतम् । ९५ ।

अद्य श्रीभुवनेश्वरे च कटके वालेश्वरे भद्रखे
पुर्यां ब्रह्मपुरे च सम्वलपुरे तज्जन्मभूम्यादिषु ।
तत्संक्रान्तसभासुतत्प्रतिकृतौमाल्यार्पणं शोभते
हाहन्त क्वचकेन तन्नहि कृतं तज्जीवने तद्गले । ९६ ।

वङ्गीया गुणिनो भवन्ति गुणिनां शश्वद् गुणज्ञारवी-
न्द्रोवै विश्वकविर्महात्मपदवीं श्रीगान्धये संददौ ।
प्रेम्णाचष्ट प्रफुल्ल उत्कलमणिं श्रीगोपवन्धुं तथा
श्रीयोगेशमहेशयत्नवशतो युक्तः स चोपाधिना । ९७ ।

टि— रवीन्द्रः—रवीन्द्रनाथ ठक्कुरः । प्रफुल्लः—प्रफुल्लचन्द्र रायः । योगेशः—योगेश चन्द्र राय शिद्यानिधिः । महेशः—महेशचन्द्र न्यायरत्नम् । सः—चन्द्रशेखरः । उपाधिना—महामहोपाध्याय-पदव्या ।

राधानाथवचः प्रवचम्यनुवदन् कश्चिद् गुणज्ञो जनः ।
नास्त्येको भवितोत्कले गुणनिधे यस्त्वद्गुणग्राहकः
कुर्वन्ति प्रणतिं वृथा न सलिलंसिक्त्वा सहस्रंजना
नाज्ञासीद्बुधरामचन्द्रनृपतिर्नारायणस्तांनृपः । ९८ ।

टि— राधानाथ वचः—कविवर राधानाथ रायवचनम् ।

सत्त्वात्कोविद राजहंसकुलसत्पद्माकरश्रीयुत-
क्षौणीनायकवासुदेवसुधियो राज्ञो महेन्द्रस्य च ।
त्वद्वज्ज्ञानमहीरुहोऽप्युपगतः शोच्यां दशां म्लानता-
मस्माकं तदवेक्षणं कथमहोभाग्ये विधातालिखत् । ९९ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



हीरो नित्यसमुज्ज्वल: सुरुचिमान् गाढान्धकारेऽपिच
रत्नं चावनितालसप्तकतलस्थानस्थितं मूल्यवत् ।
तद्वद्धेमच पङ्कमध्यपतितं नाप्नोति मूल्योनतां
अस्थानस्थितिमानपिस्थितियुत: सामन्तचूड़ामणि: । १०० ।

टि— अस्थानस्थितिमान्—अनुत्तमस्थानस्थ: । स्थित्या मर्यादया युत: आत्ममर्यादावानित्यर्थ: ।

सामन्तप्रतिमूर्त्तयो हि वहवो देशे विभिन्नस्थले
संस्थाप्याश्चरवीन्द्रमण्डपसमस्तस्याख्यया मण्डप: ।
कर्त्तव्यो गणकैश्च तस्यगणनामार्गप्रचारो वुधै:
स्मर्त्तव्यो महनीयतद्गुणगणज्ञानप्रकर्ष: सदा । १०१ ।

श्रीवनमाल्याचार्य साहित्य, धर्मशास्त्र, सांख्ययोगाचार्यविरचिता सामन्त चन्द्रशेखर प्रशस्ति: समाप्ता ।

। इतिशम् ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

# ସାମନ୍ତ ଚନ୍ଦ୍ର ଶେଖର ପ୍ରଶସ୍ତିର ଅନୁବାଦ

ଶ୍ରୀମଥୁରାପୁରରେ ଜାତହୋଇ ଗୋପପୁରରେ ନନ୍ଦଗୃହରେ ବଢିଥିବା ଶ୍ରୀବୃନ୍ଦାବନରେ ବଂଶୀବାଦନରତ ହୋଇ ବହୁବଧ ଲୀଳାରେ ସମଗ୍ର ଜଗତକୁ ମୁଗ୍ଧ କରିଥିବା ଅବନ୍ତୀନଗରୀରେ ପାଠ ପଢି ସାରି ଗୁରୁଦକ୍ଷିଣା ସ୍ୱରୂପ ମୃତ ଗୁରୁପୁତ୍ରକୁ ଜୀବଦ୍ଦଶାରେ ଯମପୁରରୁ ଆଣି ଗୁରୁଙ୍କୁ ସମର୍ପଣ କରିବା ଆଦି ବହୁ ମହାଶ୍ଚର୍ଯ୍ୟଜନକ କାର୍ଯ୍ୟ କରିଥିବା, ଦ୍ୱାରକାର ଅଧୀଶ୍ୱର ହୋଇ ଶେଷରେ ଅଦ୍ଭୁତ ଜଗଦ୍‌ବିଲକ୍ଷଣ ଦାରୁବ୍ରହ୍ମଶରୀରଧାରୀ ନୀଳାଚଳାଧୀଶ୍ୱର ଶ୍ରୀଜଗନ୍ନାଥଙ୍କୁ ମୁଁ ଭଜୁଅଛି । ୧ ।

ଯେ ଶୋଭା ସମୃଦ୍ଧିଶାଳୀ ଭାରତର ଗୌରବ ଅଟନ୍ତି । ଯେ ଶ୍ରୀମାନ୍ ଭାସ୍କରାଚାର୍ଯ୍ୟଙ୍କ ପରି ଗଣିତଶାସ୍ତ୍ରରେ ପାରଦର୍ଶୀ ଥିଲେ । ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥରଚନା ହେତୁରୁ ଯାହାଙ୍କର ଯଶ ପୃଥିବୀରେ ଖ୍ୟାତ ହୋଇଅଛି । ସେହି ବୈଜ୍ଞାନିକ ଶ୍ରୀମାନ୍ ଚନ୍ଦ୍ରଶେଖର ମହୋଦୟଙ୍କର ପ୍ରଶସ୍ତି ଆନନ୍ଦରେ ମୁଁ ଚତୁର୍ବେଦାଚାର୍ଯ୍ୟ ଉପାଧ୍ୟାୟ ଶ୍ରୀବନମାଳୀ ଆଚାର୍ଯ୍ୟ କରୁଅଛି । ୨ ।

ଗଙ୍ଗା ଓ କାବେରୀ ନଦୀ ମଧ୍ୟ ଭୂଭାଗ ଓ ମଗଧ ବିଜେତା ମଥୁରା ପର୍ଯ୍ୟନ୍ତ ଭୂମଣ୍ଡଳ ବିଜୟୀ ଐରଶ୍ରୀମଣ୍ଡିତ ଉତ୍କଳାଧୀଶ୍ୱର ଖାରବେଳଙ୍କଦ୍ୱାରା ଯେଉଁ ଉତ୍କଳଧରା ପାଳିତ ହୋଇ ବ୍ୟାପ୍ତ ହୋଇ ଥିଲା, ବର୍ତ୍ତମାନ ସକଳ ପୂର୍ବ ବୃହତ୍ ଗୌରବରହିତ ମନ୍ଦଭାଗ୍ୟା ସେହି ଭୂମିରେ ନୀଳାଚଳନାଥଙ୍କଦ୍ୱାରା ବିରାଜିତ ପୁରୀ ଜିଲ୍ଲା ଶୋଭା ପାଉଅଛି । ୩ ।

ସେହି ପୁରୀ ଜିଲ୍ଲାରେ ଗଙ୍ଗା ସମାନ ମହୋଦୂଜା ନଦୀର ଦକ୍ଷିଣ ତୀରରେ ବ୍ରହ୍ମାଚଳ ଉପରେ ନୀଳମାଧବ ମହାବିଷ୍ଣୁ ସର୍ବଦା

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ବିରାଜମାନ ହେଉଅଛନ୍ତି । ସୁନ୍ଦର ମନ୍ଦିର ମଧ୍ୟବର୍ତ୍ତୀ ସେହି ପ୍ରଭୁଙ୍କର ବିଦ୍ୟମାନତା ହେତୁଙ୍କୁ ଖ୍ୟାତ ବିଦ୍ୟାପୁର ଖଣ୍ଡପଡ଼ା ବୋଲି ଗୋଟିଏ କ୍ଷୁଦ୍ର ପୂର୍ବକାଳୀନ କରଦରାଜ୍ୟ ଥିଲା । ୪ ।

ଯେଉଁ ରାଜ୍ୟରେ ପଣ୍ଡିତମାନଙ୍କର ମୁଖରୁ ଶୁଣି ଶ୍ରୁତପାଠ ପଠନ ବିଷୟରେ ପଟୁ ଗୃହସ୍ଥ ଶୁଆ ଶାରୀମାନେ ବେଦାଦି ଶାସ୍ତ୍ରର କିଛି ଅଂଶ ପାଠ କରୁଥିଲେ । ବିଦେଶାଗତ ପଣ୍ଡିତମାନେ ତାହା ଶୁଣି ବୁଧଜନମାନଙ୍କର ଘରକାନ୍ଥରେ ଲେଖାହୋଇଥିବା ବିଭିନ୍ନ ଶାସ୍ତ୍ରୀୟ ସୂତ୍ରାଂଶ ଗୁଡ଼ିକୁ ଦେଖି ଆନନ୍ଦିତ, ବିସ୍ମିତ ଓ ଭୀତ ହେଉଥିଲେ । ଶୁଆଶାରୀ କପର ମନ୍ତ୍ର ଶ୍ଳୋକ ପ୍ରଭୃତି ପଢ଼ୁଛନ୍ତିବୋଲି ଆନନ୍ଦିତ, ବିସ୍ମିତ କାନ୍ଥରେ ଜଟିଳ ଶାସ୍ତ୍ରାଂଶ ଲେଖା ଦେଖି ଆମେ ଏଠିକାର ପଣ୍ଡିତମାନଙ୍କ ସଙ୍ଗେ ହାରଯିବା ବୋଲି ଭୀତ ହେଉଁ ଖଣ୍ଡପଡ଼ାର ଗୁଣିଗଣଶ୍ରେଷ୍ଠ ଶ୍ରୀ ଦୀନବନ୍ଧୁ ମିଶ୍ର ଖେଡ଼େଙ୍ଗା । ୫ ।

ହରି ଭକ୍ତିଭାବ ପ୍ରବଣ ହୋଇ ସଂସ୍କୃତ ଭାଗବତ ଗ୍ରନ୍ଥର ଆକ୍ଷରିକ ଅଭିପ୍ରାୟକୁ ଅନୁସରଣ କରି ସୁନ୍ଦର ଓଡ଼ିଆ ପଦ୍ୟାନୁବାଦ ରଚନା କରିଥିଲେ । (ଯେଉଁ ଗ୍ରନ୍ଥ ଖେଡ଼େଙ୍ଗାଙ୍କ ଭାଗବତ ବୋଲି ସୁପରିଚିତ) ଯେଉଁ ଖେଡ଼େଙ୍ଗାଙ୍କ ଠାରୁ ଆରମ୍ଭକରି ତାଙ୍କ ବଂଶର ସାତ ପୁରୁଷ ଉତ୍ତମ ପଣ୍ଡିତଥିଲେ ।

(ଏଠାରେ ମନେ କରିବାକୁ ହେବ ଯେ ଉକ୍ତ ଖେଡ଼େଙ୍ଗାଙ୍କ ବଂଶୀୟ ଆନନ୍ଦ ଖେଡ଼େଙ୍ଗା ଅହି ପ୍ରାଂସମାନ୍ୟ ଚନ୍ଦ୍ରଶେଖରଙ୍କର ସଂସ୍କୃତ ଗୁରୁଥିଲେ ।) ଏହାପରି ସେହି ସ୍ଥାନର ବିଦ୍ୟା ଗୁଣଗଣ ମହିମାକୁ ସୁଧୀବୃନ୍ଦ ସାଧୁବୁଦ୍ଧିରେ ଅନୁମାନ କରିବେ । ୬ ।

ସେହି ଖଣ୍ଡପଡ଼ାରେ ବଘେଲରାଜ ବଂଶ ପୁରୁଷଶ୍ରେଷ୍ଠ ମହାବିକ୍ରମଶାଳୀ ରଘୁନାଥ ନରେନ୍ଦ୍ରଙ୍କର ମଧ୍ୟମପୁତ୍ର ପୁଣ୍ୟବାନ୍ ଦୀର୍ଘାୟୁ ରାଜା ଶ୍ରୀ ଯଦୁନାଥ ମଙ୍ଗରାଜ ବିଶେଷ ଖ୍ୟାତିସମ୍ପନ୍ନ ଥିଲେ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ସେ ରାଜ୍ୟର ବିଶେଷ ଉନ୍ନତିମୂଳକ କାର୍ଯ୍ୟ କରିଥିଲେ । ସେ ଖଣ୍ଡପଡ଼ାର ପ୍ରଥମ ରାଜାଥିଲେ । ୭ ।

ହରିପାଦ ପଦ୍ମସେବା ପରାୟଣ ବିଦ୍ୱାନ୍ ତଦୀୟପୁତ୍ର ନାରାୟଣ ମଙ୍ଗରାଜ ରାଜା ହୋଇଥିଲେ । ଏବଂ ଯେ ମନୋହର ସଂଗୀତ ନାରାୟଣ ଗ୍ରନ୍ଥ ରଚନା କରିଥିଲେ । ତାଙ୍କର ପୁତ୍ର ରାଜା ବାଲୁକେଶ୍ୱର ମଙ୍ଗରାଜ ପ୍ରଜାରଞ୍ଜନ ଓ ଖ୍ୟାତିମାନ୍ ଥିଲେ । ସେ ଖଣ୍ଡପଡ଼ାଗଡ଼ର ପୂର୍ବଦିଗରେ ବାଲୁକେଶ୍ୱର ଶିବମନ୍ଦିର ନିର୍ମାଣ କରାଇଥିଲେ । ୮ ।

ତାଙ୍କର ପୁତ୍ର ଦୟା ଦାକ୍ଷିଣ୍ୟାଦି ସକଳ ସ୍ୱାମିଗୁଣ ଭୂଷିତ ବନମାଳୀ ରାଜା ହୋଇଥିଲେ, ଯାହାଙ୍କର ପ୍ରଜ୍ଞା ପ୍ରତାପ ଅଭ୍ୟୁଦୟ ପ୍ରଚୁର ଯଶ ଓ ମିତ୍ର କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ତତ୍‌କାଳୀନ ଉତ୍କଳାଧୀଶ୍ୱର ବୀର ଭୂରି ପ୍ରତାପଶାଳୀ ଗଜପତି ମହାରାଜ ଶ୍ରୀ ଗୋପୀନାଥ ଦେବ ତାଙ୍କୁ ଶ୍ରେଷ୍ଠ ମର୍ଦ୍ଦରାଜ ଭ୍ରମରବର ରାୟ ପଦବୀ ପ୍ରଦାନ କରିଥିଲେ । (ମନେ କରିବାକୁ ହେବ ଯେ ରାଜା ବନମାଳୀଙ୍କଠାରୁ ରାଜା ହରିହରଙ୍କ ପର୍ଯ୍ୟନ୍ତ ସମସ୍ତ ରାଜା ଉକ୍ତ ପଦବୀରେ ପୁରୁଷାନୁକ୍ରମେ ଭୂଷିତ ହୋଇଥିଲେ) । ୯ ।

ରାଜା ବନମାଳୀଙ୍କର ପୁତ୍ର ନଥିବାରୁ ତଦୀୟ ପିତୃବ୍ୟ ପୁତ୍ର ଶ୍ରୀ ବୈରାଗୀ ରାଜା ହୋଇଥିଲେ । ସେ ସମସ୍ତ ରାଜଗୁଣ ଭୂଷିତ ଦେବତା ବ୍ରାହ୍ମଣଙ୍କର ଅତ୍ୟନ୍ତ ଭକ୍ତ ଓ ଅତି ଚତୁର ଥିଲେ । ପ୍ରଖ୍ୟାତ କୀର୍ତ୍ତିଶାଳୀ ତାଙ୍କର ବିସ୍ତୃତ ରାଜନୀତିମାନ୍ ପୁତ୍ର ଶ୍ରୀମାନ୍ ନୀଳାଦ୍ରି ସିଂହ ରାଜା ହୋଇ ଥିଲେ । ସେ ଉତ୍ତମ ବୁଦ୍ଧି ସଂପନ୍ନ ବୀପ୍ତତେଜା ଖଳବଳ ଦଳନକାରୀ ଥିଲେ । ଏଠାରେ ମନେକରିବାକୁ ହେବ ଯେ ସାମନ୍ତ ଚନ୍ଦ୍ରଶେଖର ସିଦ୍ଧାନ୍ତ ଦର୍ପଣରେ ବୈଶିଷ୍ଟ୍ୟ ଦୃଷ୍ଟିରୁ ନିଜକୁ ନୀଳାଦ୍ରି ସିଂହଙ୍କ ବଂଶଧର ବୋଲି ପ୍ରକାଶ କରିଛନ୍ତି । ତାହାହେଲା—

"ସୋଽୟଂ ନୀଳାଦ୍ରିସିଂହାନ୍ୱୟବଦନଦରୀନିର୍ଗତଃ ପ୍ରାପ୍ତଦୁର୍ଗଃ ॥

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ସେହି ରାଜା ନୀଳାଦ୍ରି ସିଂହଙ୍କର ପୁତ୍ର ନୃସିଂହ ସିଂହ ରାଜଭି କରି ଉତ୍ତମ ରାଜଧର୍ମରେ ଯୁକ୍ତ ହୋଇଥିଲେ । ଯେ ଦୁର୍ଗ ମଧ୍ୟରେ ମହାମହିମ ଶ୍ରୀ ନୀଳକଣ୍ଠେଶ୍ୱର ମହାଦେବଙ୍କୁ ପ୍ରତିଷ୍ଠିତ କରାଇ ଥିଲେ । ତସ୍ୟ ଜ୍ୟେଷ୍ଠ ପୁତ୍ର ଶୁଭବୁଦ୍ଧି ଶ୍ରୀ ପୁରୁଷୋତ୍ତମ ରାଜା ହୋଇଥିଲେ । ତାଙ୍କର ପୁତ୍ର କୃଷ୍ଣ ଚନ୍ଦ୍ର ରାଜା ହୋଇଥିଲେ । ସେ ପ୍ରଜାବତ୍ସଳ ଥିଲେ । ୧୧ ।

ତାଙ୍କର ପୁତ୍ର କୁଞ୍ଜ ବିହାରୀ ରାଜା ହୋଇଥିଲେ । ସେ ମହାନ୍ ଧାର୍ମିକ ଥିଲେ । ସେ ସ୍ଥାନୀୟ ଗୋପୀନାଥ ମହାପ୍ରଭୁ ଓ ଜଗନ୍ନାଥଙ୍କର ଉତ୍ତମ ମନ୍ଦିର ଏବଂ ସୁବର୍ଣ୍ଣରେ ଶ୍ରୀ ରାଧିକାଙ୍କର ସୁନ୍ଦର ମୂର୍ତ୍ତି ନିର୍ମାଣ କରାଇଥିଲେ । ସେ ସ୍ଥାନୀୟ ବଡ଼ପୋଖରି ଖୋଳାଇ ଥିଲେ । (ସେହି ପୋଖରୀରେ ଅଦ୍ୟାବଧି ଚନ୍ଦନଯାତ୍ରା ସମୟରେ ରାଜକୀୟ ଠାକୁରମାନଙ୍କର ରୂପ କ୍ରୀଡ଼ା ହେଉଅଛି ।) ସ୍ଥୂଳତଃ ସେ ରାଜ୍ୟଶ୍ରୀବର୍ଦ୍ଧକ ଥିଲେ । ୧୨ ।

ସେହି ରାଜା କୁଞ୍ଜବିହାରୀଙ୍କର ପୁତ୍ର ନଥିବାରୁ ତାଙ୍କର ସାନ ଭାଇ ନଟବର ରାଜା ହୋଇଥିଲେ । ସେ ଉତ୍ତମ ପଥରରେ ସ୍ଥାନୀୟ ଜଗନ୍ନାଥଙ୍କର ସୁନ୍ଦର ଜଗମୋହନ, ବହୁ ପ୍ରକାର ବଗିଚ୍ଚ, ପୁଷ୍କରିଣୀ, ନନ୍ଦନବନ ନାମକ ବିମାନ ଚୂତୋଦ୍ୟାନ, ପ୍ରଶଂସନୀୟ ବହୁକୂପ ପ୍ରଭୃତି କରାଇଥିଲେ । ସେ ଦେବତା ବ୍ରାହ୍ମଣମାନଙ୍କ ପ୍ରତି ଭକ୍ତି କରୁଥିଲେ, ଏବଂ ସମସ୍ତ ରାଜ ଗୁଣରେ ଯୁକ୍ତ ହୋଇ ପୃଥିବୀ ମଧ୍ୟରେ ଧନ୍ୟ ହୋଇଥିଲେ । ୧୩ ।

ସେହି ରାଜା ନଟବର ଅପୁତ୍ରିକ ଥିବାରୁ ତାଙ୍କ ଅନ୍ତେ ତାଙ୍କର ନିକଟ ବଂଶ ସମ୍ପର୍କୀୟ ଶ୍ରୀ ନାରାୟଣ ସିଂହ ବର୍ମାଙ୍କର ପୁତ୍ର ଶ୍ରୀ ରାମଚନ୍ଦ୍ର ବିଦ୍ୱଜ୍ଜନ ମଣ୍ଡିତ ଖଣ୍ଡ ପଉନ ଭୂଖଣ୍ଡର ମଧ୍ୟ ଅଧିପତି ହୋଇଥିଲେ । ସେ ବିଶେଷ ପାଠ ପଢି ନଥିଲେ ମଧ୍ୟ ଚତୁର ଓ ଗୁଣିଜନ ଦୟାଳୁ ଥିଲେ । ୧୪ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

ପ୍ରୋକ୍ତ ରାଜା ଶ୍ରୀ ରାମଚନ୍ଦ୍ର ପୁତ୍ର ହୀନତା ହେତୁରୁ କୁଟୁମ୍ବ ସଂପର୍କୀୟ ଚନ୍ଦ୍ରଶେଖରଙ୍କର ପୁତ୍ରମାନଙ୍କ ସହିତ ବହୁ ମନୋମାଳିନ୍ୟ ଆଦି ଯୋଗୁଁ ଶ୍ୟାଳକ ଆଦିକନ୍ଦ ଜଗଦେବଙ୍କ ପୁତ୍ର ଉତ୍ତମ ଗୁଣବାନ୍ ରାଜଲକ୍ଷଣ ଲକ୍ଷିତ ଭାଗ୍ୟବାନ୍ ପ୍ରିୟତମ ବାଳକ ଶ୍ରୀମାନ୍ ହରିହରଙ୍କୁ ଯଥାବିଧି ପୋଷ୍ୟପୁତ୍ର କରିଥିଲେ । ୧୫ ।

ରାଜା ରାମଚନ୍ଦ୍ରଙ୍କ ଅନ୍ତେ ପରଂପରାକ୍ରମେ ମର୍ଦ୍ଦରାଜଭ୍ରମରବର ରାୟ ପଦବୀ ଭୂଷିତ ହୋଇ ରାଜ୍ୟଲକ୍ଷ୍ମୀ ଭାଗ୍ୟ ଭୋଗ କରିବା ସଙ୍ଗେ ସଙ୍ଗେ ଶିକ୍ଷା, ସ୍ୱାସ୍ଥ୍ୟ, ବିଭିନ୍ନ ବିଭାଗ ପର୍ଯ୍ୟବେକ୍ଷଣ ଦାୟିତ୍ୱ ଏବଂ ରାଜ ମର୍ଯ୍ୟାଦାଯୁକ୍ତ ଚତୁରମତି ରାଜା ହରିହର କଂଗ୍ରେସଭୁକ୍ତ ହୋଇ ଓଡ଼ିଶାରେ ପୂର୍ତ୍ତ ମନ୍ତ୍ରୀ ହୋଇଥିଲେ । ୧୬ ।

ସେହି ଉଦାର ମହାମନା ରାଜା ହରିହର ପୋଷକପିତା ଶ୍ରୀ ରାମଚନ୍ଦ୍ରଙ୍କ ନାମରେ ସର୍ବପ୍ରଥମେ ନିଜ ଖଣ୍ଡପଡ଼ା ଗଡରେ ଉଚ୍ଚ ବିଦ୍ୟାଳୟ ମହାମନୀଷୀ ଶ୍ରୀଯୁକ୍ତ ଚନ୍ଦ୍ରଶେଖରଙ୍କ ନାମରେ ଗୋଟିଏ ମୁଦ୍ରଣାଳୟ ଏବଂ ପରିବହନ ବିଭାଗ ମନ୍ତ୍ରୀ ଥିବା ସମୟରେ ଖଣ୍ଡପଡ଼ା ଗଡ଼ ନିକଟରେ କୁସୁମୀ ନଦୀବନ୍ଧ ପ୍ରଭୃତି ଓ ମାର୍ଗୋନ୍ନତି (ପିତୁରାଜମାର୍ଗ) କରିଥିଲେ । ୧୭ ।

ସେହି ରାଜା ହରିହର ମଧ୍ୟ ଉତ୍ତମ ବ୍ୟୋମଯାନ ଚାଳକ, ସର୍ବଦା କର୍ତ୍ତବ୍ୟନିଷ୍ଠ, ଦୁର୍ନୀତି ପ୍ରତିଷେଧକ ଥିଲେ । ତାଙ୍କର ସମୟଜ୍ଞାନ ଓ ଆତ୍ମସମ୍ମାନ ଯଥେଷ୍ଟ ଥିଲା । ସେ ଅଶ୍ୱାରୋହଣ, ଶିଳ୍ପ କର୍ମୀ, ମୃଗୟା, ଉତ୍ତମ କନ୍ଦୁକ କ୍ରୀଡ଼ାଇତ୍ୟାଦିରେ ଦକ୍ଷ ଥିଲେ । ସ୍ଥାନୀୟ ଶ୍ରୀ ନୀଳକଣ୍ଠେଶ୍ୱର ମହାଦେବଙ୍କଠାରେ ତାଙ୍କର ଅତ୍ୟନ୍ତ ଭକ୍ତିଥିଲା । ୧୮ ।

ପୂର୍ବୋକ୍ତ ନୃସିଂହସିଂହ ନୃପତିଙ୍କର ପଞ୍ଚମ ପ୍ରିୟପୁତ୍ର ଯେଉଁ ପ୍ରୋକ୍ତ ଶ୍ରୀ ପୁରୁଷୋତ୍ତମ ଭୂପତିଙ୍କର ଚତୁର୍ଥ ଭ୍ରାତା, ସେହି

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ଶ୍ରୀ ଶ୍ୟାମବନ୍ଧୁ ସିଂହ ସାମନ୍ତ ସୁଗୁଣବାନ୍, ବତୁର ବୁଦ୍ଧି ସଂପନ୍ନ, ଧର୍ମ ପରାୟଣ, ସ୍ଥିରମନା ଓ ଉତ୍ତମ ବିଦ୍ୱାନ୍ ଥିଲେ । ୧୯ ।

ତାଙ୍କର ପତ୍ନୀ ବିଷ୍ଣୁମାଳୀ ପୁଣ୍ୟବାନ୍ ଧରାକୋଟ ରାଜଭ୍ରାତା ପଦ୍ମନାଭ ସିଂହ ବର୍ମାଙ୍କର ଦୁହିତା । ସେ ସତ୍‌କର୍ମ କରିବାରେ ଶ୍ରଦ୍ଧାଳୁ, ଦାନଶୀଳା, ହରି ଭଜନରତା, ସ୍ୱାମିସେବା ପରାୟଣା ଶିକ୍ଷାବୀକ୍ଷାଦି କାର୍ଯ୍ୟ ଦକ୍ଷା, ରାଜକୁଳର ସଦାଚାର ରକ୍ଷା ବିଷୟରେ ଆଗ୍ରହାନ୍ୱିତା, ସାଧ୍ୱୀ, ମଧୁଭୁଲ୍ୟ ମଧୁରଭାଷିଣୀ ଏବଂ ଶିବଭକ୍ତା ଥିଲେ । ୨୦ ।

ଯେ ନଅଗୋଟି ଝିଅ ଜାତ ହେବାପରେ ଜନ୍ମିଥିବା ପୁଅଟିଏ ମରିଯିବାରୁ ଅତ୍ୟନ୍ତ ଦୁଃଖିତା ହୋଇ ଖଣ୍ଡପଡ଼ା ଗଡ଼ର ଅନତି ଦୂରବର୍ତ୍ତୀ ଖୁଣ୍ଟୁପଡ଼ା ଗ୍ରାମରେ ବିରାଜମାନ ମହାମହିମ ରାମେଶ୍ୱରଙ୍କ ପାଖରେ ଧାରଣା ଦେଇ ଅଖିବୁଜା କାତର ଅବସ୍ଥାରେ ଭକ୍ତ ଶିବଙ୍କ ଶକ୍ତିଚତୁଃପାର୍ଶ୍ୱ ହାତବୁଲାଇ ଚକକଣ ଡ୍ରୋଟ ହାଲୁକା କଳା ବର୍ତ୍ତୁଳ ଗୋଡ଼ିଟିଏ ଗିଳି ଦେଇଥିଲେ । ୨୧ ।

ଶିବ ଭକ୍ତିଯୁକ୍ତ ହୃଦୟା ସେହି ବିଷ୍ଣୁମାଳୀ ଦେବୀ ସେହି ଗୋଡ଼ିଟିକୁ ଶିବଙ୍କ ଦୟାରୁ ମିଳିଥିବା ମନେକଲେ । ସେ ବିଷୟ ମଧ୍ୟ ଆନନ୍ଦରେ ବିମୀତ ଭାବରେ ନିଜ ସ୍ୱାମୀଙ୍କୁ କହିଥିଲେ । ଭାଗ୍ୟବଶତଃ ମାନମୟୀ ଶ୍ରୀମତୀ ବିଷ୍ଣୁମାଳୀ ଅଚିରେ ଗର୍ଭବତୀ ମଧ୍ୟ ହେଲେ । ଶୁଭ ସମୟରେ ସୁପୁତ୍ରଟିଏ ଜନ୍ମ କଲେ । ଯାହାଙ୍କର ମୁଁ ପ୍ରଶଂସା କରିବି । ୨୨ ।

ସାମନ୍ତ ଶ୍ୟାମବନ୍ଧୁ ପୁତ୍ର ଜନ୍ମ ହେବାଶୁଣି ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣମୁଦ୍ରା, ବସ୍ତ୍ର, ଅଳଂକାର, ଭୂମି, ଅକ୍ଷତ, ଉତ୍ତମଧେନୁ ଦାନ କରିଥିଲେ । ସେହି ପୁଅର ଶ୍ରବଣ ସୁଖକର କ୍ୱାଁ କ୍ୱାଁ କାନ୍ଦ ଶୁଣି ବାଞ୍ଛିତାର୍ଥ ସିଦ୍ଧି ହେଉଥିବାରୁ ହୃଦୟବାନ୍ ମାତାପିତା ଦୁହେଁ ଅମନ୍ଦ ଆନନ୍ଦ ଅନୁଭବ କରିଥିଲେ । ୨୩ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ଶିବାନୁଗ୍ରହରୁ ସୁପୁତ୍ର ଜାତ ହୋଇଥିବା ହେତୁ ମାତାପିତା ଭକ୍ତିରେ ଶିବଙ୍କୁ ମନ ମଧ୍ୟରେ ଧ୍ୟାନକରି ଚନ୍ଦ୍ରଶେଖର ବୋଲି ସେହି ପୁତ୍ରର ନାମଦେଲେ । ତତ୍‌ପୂର୍ବ ଜାତ ପୁତ୍ରର ନିଧନ କାରଣରୁ ଲୋକ ପ୍ରଚଳିତ ପ୍ରଥା ରକ୍ଷାକରି ଆନନ୍ଦିତ ହୋଇ ସେହି ପୁତ୍ରକୁ ସ୍ନେହରେ ପଠାଣି ବୋଲି ଡାକିଲେ । ୨୪ ।

ସେହି ଏହି ବାଳକ ଶୁକ୍ଳପକ୍ଷ ଚନ୍ଦ୍ରପରି ବଢ଼ିଲା । ସନ୍ତତ ନିର୍ମଳ ଘର ଅଗଣାରେ ହାତ ଆଣ୍ଠୁ ଭରାଦେଇ ଅଳ୍ପ ଗୁରୁଣ୍ଡି ଗୁରୁଣ୍ଡି ମା ବାପଙ୍କ ଆଙ୍ଗୁଠି ଧରି ଓ କାନ୍ଥଧରି ଧୀରେ ଧୀରେ ଚାଲିବାକୁ ଲାଗିଲା ଏବଂ ନିଜର ଅଳ୍ପ ଉଦ୍ୟମରେ ଘର ଚାରିଆଡ଼େ କ୍ରମେ ଚାଲିଲା । ୨୫ ।

ପାଠପଢ଼ା ଶେଷରେ ବିଚିତ୍ର ଶିଶୁଟି ନିଜ ବହିରେ ଥିବା ଛବି ଗଣୁଥିଲା । ତାହାର ଶିକ୍ଷକ ଏ ଗୋଟିଏ ମହାନ୍ ଗାଣିତିକ ହେବ ବୋଲି ଜାଣି ପାରିଲେ । ବାଲ୍ୟଗୁରୁଙ୍କର ସେହି ତାଦୃଶ ଅନୁମାନ ଭବିଷ୍ୟତରେ ସିଦ୍ଧ ହେଲା । ଯାହାଙ୍କର କୀର୍ତ୍ତି ବର୍ତ୍ତମାନ ଅବନୀ ମଣ୍ଡଳକୁ ଧବଳ କରି ପକାଉଛି । ୨୬ ।

ସତ୍‌ପୁତ୍ର କୁଳ ଚନ୍ଦ୍ରମା ସେହି ଚଂଦ୍ରଶେଖର ସିଂହ ସାମନ୍ତ ବିନୟ, ବଚନ ମାଧୁର୍ଯ୍ୟ, ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ, ଔଦାର୍ଯ୍ୟ, ଦୟା, କ୍ଷମା ଆଦି ଉତ୍ତମ ଗୁଣଗଣଦ୍ୱାରା ସର୍ବଦା ଭୂଷିତ ହୋଇ ଜ୍ୟୋତିଃ ଶାସ୍ତ୍ର ମହାବିଶାରଦ ଭାବରେ ଅତିଶୟ ପ୍ରତିଷ୍ଠା ଲାଭକରି ଏହି ପୃଥିବୀରେ ବିଖ୍ୟାତ ବୈଜ୍ଞାନିକ ହୋଇଥିଲେ । ୨୭ ।

ଯଥାସମୟରେ ତରୁଣ ବୟୋବସ୍ଥା ଯୁକ୍ତ ସେହି ସାମନ୍ତଙ୍କର ବିବାହୋତ୍ସବ ଉପସ୍ଥିତ ହେଲା । ଉକ୍ତ ଉତ୍ସବରେ ହାତୀ ଘୋଡ଼ା ଲୋକମାନଙ୍କର ଚରଣାଘାତରୁ ଉତ୍‌ଥିତ ଧୂଳି, ଭେରୀ ଶଙ୍ଖ ମୃଦଙ୍ଗ କାହାଳୀ ବୃହତ୍ ତୁରୀ ଆଦି ବାଦ୍ୟମାନଙ୍କର ଧ୍ୱନି ଓ ପାଲିଙ୍କି ସବାରି

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ତାମଯାନ ପ୍ରଭୃତି କାନ୍ଦେଇଥିବା ଆପଟମାନଙ୍କର ଶ୍ରୁତି ସୁଖକର ସ୍ୱତନ୍ତ୍ରତାର ସ୍ୱର ପହଲି ଗୁଡ଼ିକ ଦ୍ୱାରା ଗଗନ ମଣ୍ଡଳ ପୂର୍ଣ୍ଣ ହୋଇଗଲା । ୨୮ ।

ବହୁ ବିଧ ସମ୍ଭାର ଦ୍ୱାରା ସଜ୍ଜୀକୃତ ହୋଇଥିବା ଅନୁଗୁଳର ପ୍ରଧାନ ରାଜମାର୍ଗ ନାନାସ୍ଥାନ ସମାଗତ ହୋଇ ବର ସହିତ ଯାଉଥିବା ଉତ୍ତମ କ୍ଷତ୍ରିୟ ବାନ୍ଧବ, ପଣ୍ଡିତ ଓ ବର ଯାତ୍ରୀମାନଙ୍କ ଦ୍ୱାରା ଏବଂ ବିବାହ ଯାତ୍ରା ଦର୍ଶକ ଲୋକମାନଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ସେହି ବିବାହ ଯାତ୍ରୋତ୍ସବ ସର୍ବୋତ୍କୃଷ୍ଟ ହୋଇଥିଲା ବୋଲି ଦର୍ଶକ ଲୋକମାନେ କହିଥିଲେ । ୨୯ ।

ବିବାହାର୍ଥ ନିର୍ମିତ ସଭାମଣ୍ଡପର ସମ୍ମୁଖ ପ୍ରଦେଶ କଦଳୀ ବୃକ୍ଷ, ପୂର୍ଣ୍ଣକୁମ୍ଭ, ଦ୍ୱାର ଉଭୟ ପାର୍ଶ୍ୱରେ ବନ୍ଧାଯାଇଥିବା ତୋରଣ, ଉତ୍ତମ ପତାକା ଇତ୍ୟାଦି ବହୁ ପ୍ରକାର ଶୋଭାସମ୍ଭାରରେ ସଜ୍ଜୀକୃତ ହୋଇଥିବାରୁ ଜନମନ ହରଣ କରୁଥିଲା ଓ ମନୋରଞ୍ଜନ ବିଚିତ୍ର କୃତ୍ୟ ଏବଂ ନୃତ୍ୟ ଦ୍ୱାରା ଅତ୍ୟନ୍ତ ଶ୍ରୀମନ୍ତ ହୋଇ ଉପଭୋଗ୍ୟ ହୋଇଥିଲା । ୩୦ ।

ଲୋକମାନେ ସୌନ୍ଦର୍ଯ୍ୟ ବିବର୍ଜିତ ସାମନ୍ତଙ୍କର ମୁଖଦେଖି ପିତା କାହିଁକି ଏପରି ଏହି ଅସୁନ୍ଦର ବରଟିଏ କଲେ ବୋଲି ଦୁଃଖରେ କୁହା କୁହି ହେଲେ । ମାତା ସହିତ କନ୍ୟା ତାହା ଶୁଣିପାରି ଦୁଃଖିତ ହେଲେ । ତାହା ଜାଣି ସାମନ୍ତ ଦଶଗୋଟି ନୈଷଧୀୟ ଚରିତ ଶ୍ଳୋକ ଗୁରୁ ଗମ୍ଭୀର ସ୍ୱରରେ ସେତେବେଳେ ପାଠକଲେ ।୩୧।

ପ୍ରଚୁର ଗୁଣ ଓ ଯଶରେ ଉତ୍ତମ ସୁନ୍ଦର ସାମନ୍ତଙ୍କର ସେହି ଶ୍ଳୋକ ପଠନ ରସ କନ୍ୟା ଶୁଣି ମୁଖଶ୍ରୀ ରହିତ ହୋଇଥିଲେ ମଧ୍ୟ ଏହି ବରେଣ୍ୟ ବରଙ୍କୁ ମୁଁ ନିଶ୍ଚୟ ବିବାହ କରିବି ବୋଲି କହିଲେ । ତାପରେ ବାଣୀ ସୁପୁତ୍ର ଶାନ୍ତମନା ସେହି ସାମନ୍ତ ଗୁଣିଜନ ସୁଗୁଣ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ଗ୍ରାହକା ସେହି କନ୍ୟାର ପାଣିଗ୍ରହଣ ପୂର୍ବକ ଦୟିତା ଓ ସ୍ୱଜନବର୍ଗଙ୍କ ସହିତ ନିଜଗୃହକୁ ପ୍ରତ୍ୟାଗମନ କଲେ । ୩୨ ।

ହେମନ୍ତ ରଜନୀ ପର ନୈସର୍ଗିକ ହିମ ବିବର୍ଦ୍ଧମାନା ଙ୍କର କ୍ଷତ୍ରିୟ ନନ୍ଦିନୀ ସାମନ୍ତ ପିତୃମତୀ ମତିମତୀ ଧୃତିମତୀ ନମ୍ରବତୀ ଗୁଣବତୀ ଶୀଳବତୀ ଗଜଗାମିନୀ ସେହି ସାମନ୍ତ ସୀମନ୍ତିନୀ ବିଦ୍ୟାଗୌରବ କାମିନୀ ଥିଲେ । ୩୩ ।

ପ୍ରଶ୍ନୋତ୍ତର ବ୍ୟାଜରେ ଚନ୍ଦ୍ରଶେଖରଙ୍କର ସୀତାପତିତ୍ୱ ବର୍ଣ୍ଣନ
(ବିଷମ ସମସ୍ୟାସହ)

କାହାର ବାଣରେ ଦଶମୁଖ କ୍ଷୟପ୍ରାପ୍ତ ? କ୍ଷୀର ସାଗରର ରମା କଅଣ ହୁଅନ୍ତି ? ରାଜର୍ଷି ଜନକଙ୍କର ତନୟା କିଏ ? ନଳ ଦମୟନ୍ତୀଙ୍କର କଅଣ ହୁଅନ୍ତି ? ଯଥାର୍ଥତା ସହିତ ବିଷମ ସମସ୍ୟା କଅଣ ହୋଇ-ପାରେ ?

ଉତ୍ତର—ଶ୍ରୀମଦ୍‌ଦାଶରଥିଙ୍କର ଗୁଣ୍ୟାଢ଼୍ୟତନୟା ସୀତା ମନୋବଲ୍ଲଭ ଚନ୍ଦ୍ର ଶେଖର ।

ଯଥାର୍ଥତା—ଶ୍ରୀମଦ୍‌ଦାଶରଥିଙ୍କର—ଅନୁଗୁଳରାଜ—ବଂଶୀୟ ଭୁରଙ୍ଗଗ୍ରାମନିବାସୀ ଶ୍ରୀ ଦାଶରଥି କ୍ଷତ୍ରିୟବର—ସିଂହଙ୍କର ଗୁଣାଢ଼୍ୟ ତନୟା-ସୀତା-ମନୋବଲ୍ଲଭ, ଚନ୍ଦ୍ରଶେଖର—ଚନ୍ଦ୍ରଶେଖର ସିଂହ ସାମନ୍ତ । ବିଷମ ସମସ୍ୟା—ଶ୍ରୀମଦ୍‌ଦାଶରଥିଙ୍କର—ଶ୍ରୀରାମଚନ୍ଦ୍ରଙ୍କର ଗୁଣାଢ଼୍ୟତନୟା ସୀତା ମନୋବଲ୍ଲଭ, ଚନ୍ଦ୍ରଶେଖର-ମହାଦେବ । ୩୪ ।

ଯାହାଙ୍କର ପୁତ୍ରମାନେ ବିଚକ୍ଷଣ ପୁଣ୍ୟମନ୍ତ ଓ ସର୍ବଦା ଉତ୍ତମ ଆଜ୍ଞାବହ ଥିଲେ । ଯାହାଙ୍କର ପତ୍ନୀ ସୀତାଦେବୀ ସୁପତିବ୍ରତା ଗୁଣବତୀ ଓ ସନ୍ତତ ସ୍ୱାମିସେବାପରାୟଣା ଥିଲେ । ମିତ୍ରମାନେ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ପ୍ରିୟକାର୍ଯ୍ୟ କର ଯାହାଙ୍କୁ ଆନନ୍ଦିତ କରୁଥିଲେ । ଯେ ତାଦୃଶ ପୂନ୍ତ୍ରକଳନ୍ଧ ମିନ୍ଦ ମାନଙ୍କୁ ପାଇ ପୃଥିବୀରେ ଭାଗ୍ୟବାନ୍ ହୋଇ-ଥିଲେ । ୩୫ ।

ଯେ ଶ୍ଳେଷଗର୍ଭକ ବାକ୍ୟ ବ୍ୟବହାର କରିବାରେ ସମର୍ଥଥିଲେ । ଯେ ଭଞ୍ଜୀୟ ଓଡ଼ିଆ କାବ୍ୟ ପ୍ରଭୃତିର ଉତ୍ତମ ଚର୍ଚ୍ଚା ଦ୍ୱାରା ପ୍ରଚୁର ଭାବ ପୂର୍ଣ୍ଣ ଉତ୍କଳ ସାହିତ୍ୟ ଶିଦ୍ୟାରୂପକ ବଧୂଙ୍କୁ ପ୍ରକୃଷ୍ଟଭାବରେ ଅର୍ଚ୍ଚନା କରୁଥିଲେ । ଗୋବିପ୍ର ଦେବତା ମାନଙ୍କଠାରେ ଯାହାଙ୍କର ହୃଦୟ ସନ୍ତତ ଭକ୍ତିଯୁକ୍ତ ଥିଲା । ଯେ ଅତି ପ୍ରିୟ କଥା କହୁଥିଲେ ଓ ନିଷ୍ଠା ପରାୟଣ ଥିଲେ, ପ୍ରାଣୀମାନଙ୍କ ପ୍ରାଣ ପ୍ରତି ଯାହାଙ୍କର ଦୟାର ହୃଦୟ ହେଉଥିଲା ଏବଂ ଯେ ନିଜ ମତରେ ବୃହତ୍ ଲୌହ ଗୋଲ ସଦୃଶ ସୁଦୃଢ଼ ଥିଲେ । ୩୬ ।

ଯେ ଶ୍ରୀହର୍ଷାଦି ମହାକବିମାନଙ୍କର ଉତ୍ତମ ରସ ପୂର୍ଣ୍ଣ ସୁଶ୍ରାବ୍ୟ କାବ୍ୟାବଳୀକୁ ଅତ୍ୟନ୍ତ ଆନନ୍ଦର ସହିତ ପାଠକରି ବିଦ୍ୱଜ୍ଜନ ମାନଙ୍କର ହୃଦୟ ଆକର୍ଷଣ କରୁଥିଲେ ଏବଂ ମହର୍ଷିତୁଲ୍ୟ ଯାତ୍ରିମାନ, ଯେ ମନ୍ୱାଦି ସ୍ମୃତି ଶାସ୍ତ୍ରସାର ବିଚାର ଅନୁସାରେ ଦନ୍ତ ଘର୍ଷଣ ଆଦି ଦୈନିକ ନିତ୍ୟ କର୍ମମାନ କରୁଥିଲେ । ୩୭ ।

ଯେ ହେ ଗୋବିନ୍ଦ ହେ ମୁକୁନ୍ଦ ମାଧବ ହେ ହରେ ହେ କୃଷ୍ଣ ଦାମୋଦର ହେ କଂସାରେ ହେ ମଧୁସୂଦନ ହେ ଅଚ୍ୟୁତ ହେ ବିଧୋ ହେ ରୁକ୍ମିଣୀ ନାୟକ ହେ ଆର୍ତ୍ତତ୍ରାଣ ହେ ଦୟାନିଧେ ହେ ଯଦୁପତେ ହେ ବାସୁଦେବ ହେ ପ୍ରଭୋ ହେ ଗୋପୀନାଥ ହେ ଜନାର୍ଦ୍ଦନ ଏହି ପରି ବିଷ୍ଣୁଙ୍କର ନାମ ଗୁଡ଼ିକୁ ସଂବୋଧନ ଆକାରରେ ବୋଲୁ-ଥିଲେ । ୩୮ ।

ଯେଉଁ ପୁଣ୍ୟାତ୍ମା ଚନ୍ଦ୍ର ଶେଖର ସ୍ୱାମୀୟ ପ୍ରସିଦ୍ଧ ଶ୍ରୀମାଳ-କଣ୍ଠେଶ୍ୱର ମହାଦେବଙ୍କର ଶୋଭନୀୟ ମଣ୍ଡପକୁ ଅଳଂକୃତ କରି

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ଶିବରାତ୍ରରେ ଜାଗରଣ ପର୍ଯ୍ୟନ୍ତ ହୋଇ ଘୃତ ଦୀପାଳି ପ୍ରଜ୍ୱଳନ ଓ ପଣ୍ଡିତମାନଙ୍କ ସହିତ ଶ୍ଳୋକାନ୍ତ ପାଠ କରୁଥିଲେ । ଅନନ୍ତ ଦର୍ଶନ, ମନ୍ଦିର ପ୍ରଦକ୍ଷିଣ ଏବଂ ଦେଉଳ ଉପରେ ମହାଦୀପ ଜଳିବା ସମୟରେ ଶିବସ୍ତୋତ୍ର ପାଠ କରୁଥିଲେ । ୩୯ ।

ଯେ ସମ୍ୟକ ରୂପେ ନୀଳାଚଳନିବାସୀଙ୍କୁ ସ୍ମରଣ କରି ଗଣିତାବ୍ଦ ସ୍କନ୍ଦନୟସଂକଳିତ ଚତୁର୍ବିଂଶତି ପ୍ରକାଶଯୁକ୍ତ ନୂତନ ବ୍ରହ୍ମାଣ୍ଡ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ରଚନା କରି ପୃଥିବୀର ସ୍ଥିରତା ପ୍ରତିପାଦନ ଯୋଗ୍ୟ ବିବିଧ ଶାସ୍ତ୍ର ପ୍ରମାଣାତ୍ମକ ସଦ୍‌ବାକ୍ୟାବଳି ଓ ଯୁକ୍ତିଯୁକ୍ତ ଦ୍ୱାରା ସମସ୍ତ ପଣ୍ଡିତମାନଙ୍କୁ ବିସ୍ମିତ କରାଇ ଥିଲେ । ୪୦ ।

ସେହି ଗ୍ରନ୍ଥରେ ଉତ୍ତମ ସୂକ୍ଷ୍ମ ସିଦ୍ଧାନ୍ତବେତ୍ତା ମହାମହୋପାଧ୍ୟାୟ ସେହି ସାମନ୍ତ ଚନ୍ଦ୍ରଶେଖର ଦୁଇହଜାର ଦୁଇଶହ ଚଉରାଅଣୀ ଶ୍ଳୋକ ରଚନା କରିଅଛନ୍ତି ଓ ଅନ୍ୟ ଦୁଇଶହଷୋହଳ ଶ୍ଳୋକ ବିଭିନ୍ନ ଗ୍ରନ୍ଥମାନଙ୍କର ଉଦାହରଣ ଦେଇ ଅଛନ୍ତି । ସେ ସବୁ ମିଶାଇଲେ ଦୁଇହଜାର ପାଞ୍ଚଶହ ଶ୍ଳୋକ ସମାବେଶିତ ହୋଇଅଛି । ୪୧ ।

ଯେ ବାଲ୍ୟ ସମୟରେ ଅଧ୍ୟୟନ କରି ଚତୁର୍ଦ୍ଦଶ ବର୍ଷ ବୟସ ବେଳକୁ ଗ୍ରାମାଞ୍ଚଳରେ ପଣ୍ଡିତ ବୋଲି ପରିଚିତ ହୋଇ ଚଉତିରିଶ ବର୍ଷ ବୟସରେ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ଆବିଷ୍କାର କରିବା ଦ୍ୱାରା ପୃଥିବୀରେ ମହାପଣ୍ଡିତ ବୋଲି ପରିଚିତ ହେଲେ । ପଦ୍ମୋପମ ସୂକ୍ଷ୍ମ ଜ୍ୟୋତିଷ ସାରତତ୍ତ୍ୱ ଗୁଡ଼ିକର ବିକାଶ ବିଷୟରେ ଯେ ସୂର୍ଯ୍ୟତୁଲ୍ୟ ଆଚରଣ କରିଥିଲେ । କ୍ରମେ ସର୍ବଜନଜ୍ଞାତ ହୋଇ ବିସ୍ତୃତ କୀର୍ତ୍ତି ଦ୍ୱାରା ମଣ୍ଡିତ ହୋଇଥିଲେ । ୪୨ ।

ଜିଜ୍ଞାସୁ ଗଣକଙ୍କର ଗୋଲ ସମ୍ବନ୍ଧୀୟ ଗଣନାର ସୁସାଧ୍ୟତା ଲାଭ ସକାଶେ ଛାତ୍ର ଓ ଗୁରୁଙ୍କର ସାରଗର୍ଭକ ବହୁ ପ୍ରଶ୍ନୋତ୍ତର

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ସ୍ଥଳରେ ସମ୍ମାନ ପ୍ରଦର୍ଶନପୂର୍ବକ ଶ୍ରୀମାନ୍ ଭାସ୍କରାଚାର୍ଯ୍ୟଙ୍କର ସିଦ୍ଧାନ୍ତ ଶିରୋମଣି ଆଦି ଶାସ୍ତ୍ରୋକ୍ତିକୁ ଅନୁସରଣ କରି ଯେ ଭୂଗୋଳ ଖଗୋଳ ଭଗୋଳ ସଂପର୍କୀୟ ଗଣିତ ଉତ୍ତମରୂପେ ବିବୃତ ନିଜ ଗ୍ରନ୍ଥରେ ପ୍ରକାଶ କରି ଅଛନ୍ତି । ୪୩ ।

ନିଜର ପୂର୍ବବଂଶୀୟ ପଣ୍ଡିତମାନଙ୍କ ଦ୍ୱାରା ରଚିତ ବିସ୍ତୃତ ବୃହତ୍ ବ୍ରହ୍ମସିଦ୍ଧାନ୍ତ ଆଦି ଗ୍ରନ୍ଥଗୁଡ଼ିକର ଚର୍ଚ୍ଚା ଓ ନାନା ଗଣିତ ସମୂହର ଉତ୍ତମ ଦିଗ୍‌ଦର୍ଶକ ଗ୍ରନ୍ଥକର୍ତ୍ତା ଗାଣିତିକ ପଣ୍ଡିତମାନଙ୍କର ଅର୍ଚ୍ଚନା ଯେ କରୁଥିଲେ । ସୂର୍ଯ୍ୟସିଦ୍ଧାନ୍ତ ଅନୁସାରେ ସୂର୍ଯ୍ୟଚନ୍ଦ୍ରଭଗଣ, ମଧ୍ୟଗତି, ପଦକ ଆଦି ବିଷୟାବଳି ଓ ଉକ୍ତ ଗ୍ରନ୍ଥରେ କଥିତ ହୋଇ ନଥିବା (ଉଦୟାନ୍ତର ସାଧନାଦି) ଅନ୍ୟ ଉପାଦେୟ ବିଷୟମାନ ମଧ୍ୟ ନିଜ ପ୍ରଜ୍ଞାବଳରେ ସ୍ୱଗ୍ରନ୍ଥ ସିଦ୍ଧାନ୍ତ ଦର୍ପଣରେ ଯେ ବର୍ଣ୍ଣନା କରିଅଛନ୍ତି । ୪୪ ।

ଯେ ଗ୍ରନ୍ଥର ଆଦିରେ ପ୍ରକାଶ ଗୁଡ଼ିକର ଶେଷରେ ଶ୍ରୀନୀଳାଦ୍ରିନାଥ ଲବଣ ସମୁଦ୍ରର ଉତ୍ତରତୀରର ଶୋଭନ ଜଗନ୍ନାଥ ମହାପ୍ରଭୁଙ୍କର ମନୋହର ଯମକ ଅନୁପ୍ରାସାଦି ନାନା ଅଳଙ୍କାରଯୁକ୍ତ ସହୃଦୟ ଜନମାନଙ୍କର ଅତିଶୟ ଆନନ୍ଦଦାୟକ ଅତିସୁନ୍ଦର ବନ୍ଦନ କରିଅଛନ୍ତି । ୪୫ ।

ଚନ୍ଦ୍ରଶେଖରଙ୍କର ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥରୂପକ ସୂର୍ଯ୍ୟ ଜଗତରେ ବିଜୟଯୁକ୍ତ ହେଉଅଛି ।

ଗ୍ରନ୍ଥ—ବିଦ୍ୱଜ୍ଜନମାନଙ୍କର ହୃଦୟ ରୂପକ ପଦ୍ମାବଳୀର ମହାନନ୍ଦକୁ ଉତ୍ତମରୂପେ ଦାନ କରୁଅଛି ।

ସୂର୍ଯ୍ୟ—ପଦ୍ମସମୂହର ମହାନନ୍ଦ ପ୍ରଦାନକାରୀ ଅଟନ୍ତି । ଗ୍ରନ୍ଥର କଳେବରରେ ସର୍ବଦା ବିଷ୍ଣୁଙ୍କର ଅର୍ଥବାଚକ ପଦାବଳି

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ଦୃଷ୍ଟିଗୋଚର ହେଉଅଛି । ସୂର୍ଯ୍ୟଙ୍କର ତନୁ ସର୍ବଦା ବିଷ୍ଣୁପଦରେ (ଆକାଶରେ) ଦେଖାଯାଏ ।

ଗ୍ରନ୍ଥ— ନାନାଂବିଷୟର ବିସ୍ତାରେ ପରିପୂର୍ଣ୍ଣ ।

ସୂର୍ଯ୍ୟ—ଦକ୍ଷିଣାୟନ, ଉତ୍ତରାୟଣ, ମଧ୍ୟରେଖା ଗମନଆଦି ଭେଦରେ ବି—ଗଗନ ତଳ୍ପଁରେ ସ୍ଥିରବିସ୍ତା—ଗନ୍ତକର୍ମ ବହୁପ୍ରକାର କରନ୍ତି ।

ଗ୍ରନ୍ଥ— ନିତ୍ୟ ନୈମିତ୍ତିକାଦି କର୍ମମାନଙ୍କରେ ସୂକ୍ଷ୍ମଗଣନାନୁଯାୟୀ ଶୁଭବେଳାଦି ନିର୍ଦ୍ଦୋଷ ଭାବରେ ଜ୍ଞାପନ କରୁଥିବାରୁ ବିଶ୍ୱଜନଙ୍କର ପରମ ଉପକାରୀ ରୂପେ ଖ୍ୟାତ ।

ସୂର୍ଯ୍ୟ—ବିଶ୍ୱର ମହୋପକାରୀଭାବେ ପ୍ରସିଦ୍ଧ ଅଟନ୍ତି ।

ଗ୍ରନ୍ଥ— ବହୁପ୍ରକାଶ (ଚଉଦଶପ୍ରକାଶ) ଦ୍ୱାରାଯୁକ୍ତ ଅଟେ ।

ର୍ଯ୍ୟ —ପ୍ରଚୁର ଦୀପ୍ତିଦ୍ୱାରା ଯୁକ୍ତ ଅଟନ୍ତି । ୪୭ ।

ସେହି ଗ୍ରନ୍ଥରେ ଗଣେଶ, ସରସ୍ୱତୀ, ସୂର୍ଯ୍ୟ, ଆଦିତ୍ୟାଦି ନବଗ୍ରହ, ସମୁଦ୍ର, ଶିବ, ପାର୍ବତୀ, ବ୍ରହ୍ମାଣ୍ଡ ଏ ସମସ୍ତଙ୍କ ସହିତ ପୃଥକ୍ ପୃଥକ୍ ତୁଳନାତ୍ମକ ଶ୍ରୀଜଗନ୍ନାଥଙ୍କର ସ୍ତବରଚନା ଶ୍ରୀକ୍ଷେତ୍ରର ସମ୍ୟକ୍ ବର୍ଣ୍ଣନ ଓ ଦଶାବତାର ସ୍ତୋତ୍ର ଶ୍ଳୋକଗୁଡ଼ିକ ଅତି ଉତ୍ତମ ହୋଇଅଛି । ୪୭ ।

ସେହି ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥକାର ଚନ୍ଦ୍ରଶେଖର ଭୂଗୋଳ ଉପରେ ଖଣ୍ଡ ପଡ଼ିନ ଦୁର୍ଗରେ ରହି ଯନ୍ତ୍ରସହକାରେ ପ୍ରତିବର୍ଷ ଚକ୍ଷୁଦ୍ୱାରା ଗ୍ରହରାଶି ନକ୍ଷତ୍ରମାନଙ୍କୁ ପରୀକ୍ଷା କରି ତତ୍ସମ୍ବନ୍ଧୀ ବିଶୁଦ୍ଧ ସୂକ୍ଷ୍ମ ଗଣନା ବ୍ୟାପାରର ପାରକୁ ଯାଇ ତତ୍ ସମ୍ପର୍କୀୟ ସିଦ୍ଧାନ୍ତ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ଫଳଗୁଡ଼ିକୁ ବିଶ୍ୱର ପଣ୍ଡିତମାନଙ୍କୁ ଯଥାଯଥ ଭାବରେ ଦେଖାଇଥିଲେ । ୪୮ ।

ଜ୍ୟୋତିଃଶାସ୍ତ୍ରପ୍ରାଗଲ୍‌ଭ୍ୟ ଗଣନା ପାଟବରେ ସୁଖ୍ୟାତିସମ୍ପନ୍ନ ଯେଉଁ ମନୀଷୀ ଚନ୍ଦ୍ରଶେଖର କାଷ୍ଠବଂଶାଦି ଖଣ୍ଡରେ ସ୍ୱହସ୍ତନିର୍ମିତ ମାନଯନ୍ତ୍ରାଦିଦ୍ୱାରା ପର୍ବତପାଦପ ସମ୍ବନ୍ଧୀ ଦୂରତା ଉଚ୍ଚତାଦିର ପରିମାଣ ଓ ଗ୍ରହତାରୁକାଦି ବିଗ୍ରହର ଦୂରତାଦି ପ୍ରମାଣ ଯଥାର୍ଥଭାବେ କରି ଅଖିଳ ଧରଣୀ ମଧ୍ୟରେ ଭୂରି ପ୍ରଶଂସା ଲାଭ କରିଥିଲେ । ୪୯ ।

ଆଗେ ଜ୍ୟୋତିଃଶାସ୍ତ୍ର ବିସ୍ତାରର ପ୍ରଥମ ଗୁରୁବର୍ଗ ମୁଖ୍ୟ ଭାସ୍କରାର୍ଯ୍ୟ ପ୍ରଭୃତି ସକଳ ଗଣିତ କବିଗଣ ଗୋଲ ଏକ କକ୍ଷ ବୋଲି କହିଥିଲେ । ତାହାକୁ ବିଜ୍ଞାନ ଜ୍ଞାନସମ୍ବନ୍ଧୀ ଦୀର୍ଘ ଅତି ବିଷମ ମାର୍ଗରେ ସାବଧାନ ଶୀଘ୍ର ଗମନ କରି ଯେଉଁ ସୂରି ଚନ୍ଦ୍ରଶେଖର କଳ୍ପନା ବୃତ୍ତିଘରେ ଭୂରିକକ୍ଷ ବୋଲି ମଧ୍ୟ ସିଦ୍ଧାନ୍ତ ଦର୍ପଣରେ ରଚନା କରିଛନ୍ତି । ୫୦ ।

ସେହି ଚନ୍ଦ୍ରଶେଖର ଜ୍ୟୋତିଃ ସମୂହର ଦୃକ୍ ସିଦ୍ଧଗତିକୁ ସର୍ବତୋଭାବେ କଳନା କରି ଗଣନା କରିବାକୁ ଦିବ୍ୟ ଦୃଷ୍ଟି ପ୍ରାପ୍ତ ହୋଇ ଜନ୍ମ ଗ୍ରହଣ କରିଥିଲେ କି ? କିମ୍ବା କାହାଠାରୁ ଦିବ୍ୟାଞ୍ଜନ ପ୍ରାପ୍ତ ହୋଇଥିଲେ କି ? ଅଥବା ଆର୍ଯ୍ୟଜନୋଚିତ କାର୍ଯ୍ୟ କରିବା ବିଷୟରେ ଶ୍ରୀପରମେଶ୍ୱରଙ୍କ ଇଚ୍ଛାରେ ପ୍ରେରିତ ହୋଇ ପୃଥିବୀକୁ ଆସିଥିଲେ କି ? ନୋହିଲେ ଭୂମଣ୍ଡଳରେ ତାଦୃଶ କଷ୍ଟ ସାଧ୍ୟ କର୍ମରେ କିପରି ସମର୍ଥ ହେଲେ । ୫୧ ।

ଗଜପତି ମହାରାଜା ବୀର ଶ୍ରୀଦିବ୍ୟସିଂହ ଦେବ ଯାହାଙ୍କର ବିଶୁଦ୍ଧ ଯଥାର୍ଥ ଫଳଯୁକ୍ତ ଦୃକ୍‌ସିଦ୍ଧ ଉତ୍ତମ ସୂକ୍ଷ୍ମ ପଞ୍ଜିକାକୁ ଦେଖି ତଦ୍ଦ୍ୱାରା ଶ୍ରୀ ନୀଳଶୈଳାଧିପ ଜଗନ୍ନାଥଙ୍କର ସମସ୍ତ ସଦାଚାର

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ମାନ୍ତ ହୋଇ ପାରବ ବୋଲି ବସ୍ଥିର କରି ଯାହାଙ୍କୁ ହରିଚନ୍ଦନ ମହାପାତ୍ର ଉପାଧି ପ୍ରଦାନ କରିଥିଲେ । ୫୨ ।

ଇତ୍ୟାଦି ତଥ୍ୟ ଗୁଡ଼ିକ ବିଷୟରେ ଭ୍ରମଶୂନ୍ୟ କ୍ଷୟବୃଦ୍ଧିକାଳ କଳନା କରିଥିବାରୁ ପ୍ରଜ୍ଞା, ଆୟୁ, ବଳ, ବୀର୍ଯ୍ୟ, କୀର୍ତ୍ତି, କୁଶଳ, ସ୍ୱର୍ଗ ଏବଂ ଅପବର୍ଗପ୍ରଦ ଦେବକାର୍ଯ୍ୟ, ପିତୃକାର୍ଯ୍ୟ ଶାନ୍ତିକ, ପୌଷ୍ଟିକ, ନିତ୍ୟ, ନୈମିତ୍ତିକ, କାମ୍ୟ ଆଦି କର୍ମରେ ଯେ ସର୍ବସାଧାରଣ ଜନମାନଙ୍କର ପରମ ଉପକାର କରି ଯାଇ-ଅଛନ୍ତି । ୫୩ ।

ମେଦନୀ ପୁରାନ୍ତର୍ଗତ ନନ୍ଦ ଗ୍ରାମବାସୀ ସୁବକ୍ତା ଶ୍ରୀରୁଦ୍ର ନାରାୟଣ ଜ୍ୟୋତିଭୂଷଣ, ମଞ୍ଜୁଷାର ପଣ୍ଡିତ ଓ କବି ଶ୍ରୀ ଗଦାଧର ବିଦ୍ୟାଭୂଷଣ, ଶ୍ରୀ ଶ୍ରୀଧର ପ୍ରହରାଜ ଓ ଶ୍ରୀ ବଲ୍ଲଭ ବିଦ୍ୟାଭୂଷଣ, ତାଳଚେରର ଶ୍ରୀ ଦାମୋଦର ବାଣୀଭୂଷଣ ଏବଂ ଖଣ୍ଡପଡ଼ା ଗଡ଼ର ଶ୍ରୀ ରାଜବଲ୍ଲଭ ମିଶ୍ର ପ୍ରଭୃତି ମୁଖ୍ୟ ପଣ୍ଡିତମାନେ ମଧ୍ୟ ଜ୍ୟୋତିଃଶାସ୍ତ୍ର ଭଲଭାବେ ଶିକ୍ଷାକରିବା ପାଇଁ ଆନନ୍ଦରେ ଯାହାଙ୍କର ଶିଷ୍ୟ ହୋଇଥିଲେ । ୫୪ ।

ଯେ ମଞ୍ଜୁଷାର ରାଜା ଜଗନ୍ନାଥ ରାଜମଣି ଦେଓଙ୍କୁ ସ୍ୱହସ୍ତ ଶୋଭିତ କେବଳ ନିଜର କାଠି ଯନ୍ତ୍ର ସାହାଯ୍ୟରେ ମହେନ୍ଦ୍ର ପର୍ବତର ଉଚ୍ଚତା ପରିମାଣ କହି ତାଙ୍କଦ୍ୱାରା ବହୁ ସମ୍ମାନିତ ହୋଇ-ଥିଲେ ଏବଂ ସେହି ସଂବାଦରେ ଦକ୍ଷିଣ ଦିଗଭାଗରେ ଜଟିଳ ଅତି ଦୁଃସାଧ୍ୟ ଜ୍ୟୋତିର୍ବିଦ୍ୟା ବିଭାଗରେ ଲୋକମାନଙ୍କ ଦ୍ୱାରା ଉତ୍ତମରୂପେ ଜ୍ଞାତ ହୋଇଥିଲେ । ୫୫ ।

ଏକ ସମୟରେ ମାନ୍ଦ୍ରାଜବାସୀ ଜ୍ୟୋତିର୍ବିଦ୍ ବିଶିଷ୍ଟ ପଣ୍ଡିତ ରଘୁନାଥ ଆଚାର୍ଯ୍ୟ ଯେଉଁ ସାମନ୍ତଙ୍କ ଦ୍ୱାରା କୁହାଯାଇଥିବା ବଳିତ ବାସୀଙ୍କଦ୍ୱାରା ଦୃଶ୍ୟ ସୂର୍ଯ୍ୟଗ୍ରହଣକୁ ନିଷେଧ କରି ଫଳରେ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ସାମନ୍ତଙ୍କ ଉକ୍ତିଅନୁସାରେ ଘଟିବାରୁ ସେତେବେଳେ ଅତ୍ୟନ୍ତ ଆନନ୍ଦିତହୋଇ ଯାହାଙ୍କର କୀର୍ତ୍ତିରାଶି ମାନ୍ଦ୍ରାଜରେ ପରିପ୍ରଚାର କରିଥିଲେ । ଏତଦ୍ୱାରା ଶ୍ରୀଆର୍ଯ୍ୟଙ୍କର ଗୁଣଗ୍ରାହିତ୍ୱ ଧ୍ୱନିତ ହେଉଅଛି । ୫୬ ।

ଯେ ଇଂଲଣ୍ଡ ଓ ଅାମେରିକାରେ ଯଥାକ୍ରମେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଭବିଷ୍ୟଗ୍ରହଣ ସମ୍ୟକ୍ ରୂପେ ସାଧନ କରି ଉକ୍ତବିଷୟ ସେହି ଦେଶବାସୀଙ୍କୁ ଜଣାଇ ନିର୍ଦ୍ଦିଷ୍ଟ ସେହି ବ୍ୟବହିତ କାଳରେ ଅର୍ଥାତ ଅମାବାସ୍ୟା ଓ ପୂର୍ଣ୍ଣିମାର ଯଥୋକ୍ତ ସମୟରେ ସ୍ୱବଚନ ସାଧିଲା ହେତୁରୁ ଉତ୍ତମ ବୈଜ୍ଞାନିକ ପଣ୍ଡିତମାନଙ୍କ ଦ୍ୱାରା ଯୁକ୍ତ ବହୁଦୂର ଦେଶମାନଙ୍କରେ ମଧ୍ୟ ପ୍ରଶଂସା ଲାଭ କରିଥିଲେ । ୫୭ ।

ଯେ ଯଥା ସମୟରେ ନବାବିଷ୍କୃତ ଶୁକ୍ରଗ୍ରସ୍ତ ସୂର୍ଯ୍ୟଗ୍ରହଣ ମଧ୍ୟ ଲୋକମାନଙ୍କୁ ଦେଖାଇ ସେମାନଙ୍କୁ ବିସ୍ମୟ ସାଗରରେ ନିମଗ୍ନ କରୁଥିଲେ ଏବଂ ଚନ୍ଦ୍ରର ପରି ବୁଧ ଓ ଶୁକ୍ରଙ୍କର ଶୃଙ୍ଗୋନ୍ନତି ତଥା ନୂତନ ସୁମଙ୍ଗଳାତ୍ମକ ବହୁପ୍ରକାର ବିଷୟ ଭଲ ଭାବେ ଆବିଷ୍କାର କରିଯାଇଛନ୍ତି । ୫୮ ।

ଜ୍ୟୋତିର୍ବିଜ୍ଞାନଶିଳ୍ପୀ ସେହି ଚନ୍ଦ୍ରଶେଖର ନିଜ ତିଆରି ମାନଯନ୍ତ୍ର ସାହାଯ୍ୟରେ ନାଟକୀୟ ଛଟାରେ ପର୍ବତ ଦେଉଳ କୋଠାଘର ବୃକ୍ଷଆଦିର ଉଚ୍ଚତା ଦୂରତା ଆଦି ଓ ଗ୍ରହ ପ୍ରଭୃତିଙ୍କର ପରସ୍ପର ଦୂରତାଦି ଠିକ୍ ରୂପେ ନିର୍ଣ୍ଣୟ କରି ଜିଜ୍ଞାସୁ ପ୍ରବଳ ଆଗ୍ରହଯୁକ୍ତ ଧିରରୂପକ ରଙ୍ଗମଞ୍ଚସ୍ଥ ବୈଜ୍ଞାନିକ ଜନମାନଙ୍କମନରେ ଅତ୍ୟନ୍ତ ତୋଷ ଓ ହର୍ଷ ଜାତ କରୁଥିଲେ । ୫୯ ।

ଜ୍ୟୋତିର୍ବିଦ୍ ପଣ୍ଡିତ ମହା ମହୋପାଧ୍ୟାୟ ଶ୍ରୀସୁଧାକର ଦ୍ୱିବେଦୀ ଓ ଉତ୍ତମଗଣକ ମହାମହୋପାଧ୍ୟାୟ ଶ୍ରୀବାପୁଦେବଶାସ୍ତ୍ରୀ ପଣ୍ଡିତ ଶ୍ରୀଭଗବତୀ ଚରଣ ସ୍ମୃତିତୀର୍ଥ ଜୟପୁରର ଜ୍ୟୋତିଃଶାସ୍ତ୍ରଜ୍ଞ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ଶ୍ରୀ ଭଗବାନ ମିଶ୍ର ଓ ଜୟପୁର ଦୁର୍ଗନିବାସୀ ପଣ୍ଡିତ ଚିନ୍ତାମଣି ରଥ ଯାହାଙ୍କୁ ବହୁପ୍ରଶ୍ନ ପଚାରି ସେ ସବୁର ସନ୍ତୋଷଜନକ ଉତ୍ତର ପାଇ ବିସ୍ମିତ ହୋଇଥିଲେ ଏବଂ ଆନନ୍ଦିତ ମନରେ ସର୍ବଦା ଯାହାଙ୍କର ଭୂରି ପ୍ରଶଂସା କରୁଥିଲେ । ୭୦ ।

ଶାସ୍ତ୍ର ବ୍ୟାଖ୍ୟାନ ଚତୁର ଶ୍ରୀ ମାର୍କଣ୍ଡେୟ ଶାସ୍ତ୍ରୀ ତର୍କପଞ୍ଚାନନ ଯାହାଙ୍କର ବଚନ ପ୍ରଗଳଭତା ପ୍ରଦର୍ଶନ କରି ମନରେ ଅତ୍ୟନ୍ତ ଆନନ୍ଦ ଅନୁଭବ କରିଥିଲେ । ଏବଂ ଅନ୍ୟ ଅନେକ କାବ୍ୟ, ଅଳଙ୍କାର, ବ୍ୟାକରଣ, ବେଦ, ଗଣିତ, ପୁରାଣ, ଇତିହାସ, ଧର୍ମଶାସ୍ତ୍ରଜ୍ଞ ପଣ୍ଡିତମାନେ ଯାହାଙ୍କର ପ୍ରଜ୍ଞା ପ୍ରକର୍ଷ ଅନୁଭବକରି ଅତ୍ୟନ୍ତ ପ୍ରୀତ ହେଉଥିଲେ । ୭୧ ।

ଏକ ସମୟରେ ବିଶ୍ୱ ଖ୍ୟାତ ମହାନଗରୀ କଲିକତାରେ ବିରାଜିତ ପ୍ରଶସ୍ତ ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ନ୍ୟାୟରତ୍ନ ପଣ୍ଡିତ ମହୋଦୟ ଆଗ୍ରହ ବଶତଃ କଟକରେ ଶାସ୍ତ୍ର ଚର୍ଚ୍ଚା କରୁଥିବା ଅବସ୍ଥାରେ ଯାହାଙ୍କର ପ୍ରାଧାନ୍ୟ ଅନୁଭବକରି ବହୁ ପ୍ରଶଂସା କରିଥିଲେ । ୭୨ ।

ପ୍ରତାପଶାଳୀ କଟକ କମିଶନର କୁକ୍‌ସାହେବ ସପ୍ତଶଦ୍ୟା ପର୍ବତର ଉଚ୍ଚତା ଯାହାଙ୍କୁ ପଚାରି ଯଥାର୍ଥ ଉତ୍ତର ପାଇ ଅତିଶୟ ସନ୍ତୋଷ ଯୁକ୍ତ ମନରେ ଅତର ଚନ୍ଦନ ଉତ୍ତମ ଫୁଲହାର ଦ୍ୱାରା ତାଙ୍କର ଅର୍ଚ୍ଚନା କରି ସ୍ମିତବଦନ ତାଙ୍କର ହସ୍ତଧରି ଅର୍ଥାତ୍ କର ମର୍ଦ୍ଦନକରି ପୂଜ୍ୟ ପୂଜା ଜନିତ ସନ୍ତୋଷ ଲଭ କରିଥିଲେ । ୭୩ ।

ଏକଦା ବୈଜ୍ଞାନିକ ଗୁଣଜ୍ଞ ସଦ୍‌ଗୁଣଯୁକ୍ତ କଟକରେ ପ୍ରତିଷ୍ଠିତ ରେଭେନ୍‌ସା ମହାବିଦ୍ୟାଳୟର ବିଜ୍ଞାନ ଅଧ୍ୟାପକ ଶ୍ରୀମାନ୍ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ମଧ୍ୟ ଯାହାଙ୍କୁ ସନ୍ଧ୍ୟାକାଳରେ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ମଙ୍ଗଳ ଶୁକ୍ର ଗ୍ରହ ଦୁହିଁଙ୍କର ପରସ୍ପର ଦୂରତା କେବଳ ପରିବ ସାମନ୍ତ ନିଜ କାଠି ଯନ୍ତ୍ର ସାହାଯ୍ୟରେ ଦେଇଥିବା ଉତ୍ତରକୁ ତାଙ୍କର ଦୂରବୀକ୍ଷଣଯନ୍ତ୍ର ସହିତ ମେଳାଇ ଦେଖିଲେ ଯେ ସମାନ ଅଛି । କି ଆଶ୍ଚର୍ଯ୍ୟ !!! କି ସାଧନା !!! । ୭୪ ।

ସାମନ୍ତ ଦୂରବୀକ୍ଷଣ ଯନ୍ତ୍ର କେବେ ଦେଖିନଥିଲେ । ଏହାପରେ ସାମନ୍ତ ଇଚ୍ଛା କରିବାରୁ ଯୋଗେଶବାବୁ ବଡ଼ ନଥିବାରୁ କ୍ଷୁଦ୍ର ଦୂରବୀକ୍ଷଣ ଯନ୍ତ୍ରଟିଏ ସାମନ୍ତଙ୍କୁ ଦେଖାଇଥିଲେ । ସେତେବେଳେ ତଦ୍ଦ୍ୱାରା କେତେକ ଗ୍ରହଙ୍କୁ ନିରୀକ୍ଷଣ କରି ସେମାନଙ୍କର ଆୟତନ ବୃଦ୍ଧି ବିଷୟରେ ଉକ୍ତ ଯନ୍ତ୍ରର ସାମର୍ଥ୍ୟ ଜାଣିବାକୁ ସାମନ୍ତ ଇଚ୍ଛା କରିଥିଲେ । କିନ୍ତୁ ନିଜବୁଦ୍ଧିରେ ସେହି କାର୍ଯ୍ୟ କରିବାପାଇଁ ସେ ସାମନ୍ତଙ୍କୁ ଅନୁରୋଧ କରିବାରୁ ସାମନ୍ତ ନିଜ ଯନ୍ତ୍ର ସାହାଯ୍ୟରେ ଗଣନା କରି ଯଥାର୍ଥ ଉତ୍ତର ଦେଇ ଯୋଗେଶ ଚନ୍ଦ୍ରଙ୍କୁ ବିସ୍ମିତ କରିଥିଲେ । ଯେଣୁ ଉକ୍ତ କାର୍ଯ୍ୟ ବଡ଼ କଷ୍ଟସାଧ୍ୟ । ସାମନ୍ତ ତା କରି ପାରିବେ ବୋଲି ଯୋଗେଶ ବାବୁ ଆଶା କରିନଥିଲେ । ୭୫ ।

ଶ୍ରୀଯୁକ୍ତ ସେହି ଯୋଗେଶ ଚନ୍ଦ୍ର ସିଦ୍ଧାନ୍ତ ଦର୍ପଣର ମୁଖବନ୍ଧରେ ଜ୍ୟୋତିଃଶାସ୍ତ୍ରବିତ୍ ୟୁରୋପ ପଣ୍ଡିତବର ଶ୍ରୀମାନ୍ ଟିକୋବ୍ରାହେଙ୍କ ସହିତ ସାମନ୍ତ ଚୂଡ଼ାମଣି ଶ୍ରୀ ଚନ୍ଦ୍ରଶେଖରଙ୍କୁ ତୁଳନା କରିଅଛନ୍ତି । ଶେଷରେ ସମସ୍ତ ବିଷୟ ବିଚାର କରି ସାମନ୍ତଙ୍କର ପ୍ରଶଂସ୍ୟତରତ୍ୱ ସ୍ୱୀକାର କରିଅଛନ୍ତି । ସାମନ୍ତ ସମସ୍ତ ସୁବିଧା ସୁଯୋଗରୁ ବଞ୍ଚିତ ହୋଇ କୃତିତ୍ୱ ଅର୍ଜନ କରିଥିଲେ । କିନ୍ତୁ ଟିକୋ ସେ ସବୁ ଭାବ ଯୁକ୍ତ ହୋଇ କୃତକାର୍ଯ୍ୟ ହୋଇଥିଲେ । ଅର୍ଥାତ୍ ଟିକୋବ୍ରାହେଙ୍କ ଇଚ୍ଛାନୁସାରେ ତାଙ୍କୁ ଆବଶ୍ୟକ ଯନ୍ତ୍ରପାତି ଯୋଗାଇ ଦିଆଯାଇଥିଲା । ପ୍ରଚୁର ଆର୍ଥିକ ସାହାଯ୍ୟ ତାଙ୍କୁ ମିଳୁଥିଲା । ସେ ଯେଉଁଠାକୁ ଇଚ୍ଛା କରୁଥିଲେ, ତାଙ୍କୁ ସେଠାକୁ ନିଆଯାଉଥିଲା । ଶାସକମାନଙ୍କର ତାଙ୍କ ପ୍ରତି ଶୁଭ ଦୃଷ୍ଟି ଥିଲା । ଦେଶବାସୀ ତାଙ୍କ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

ପ୍ରତି ସ୍ନେହଶ୍ରଦ୍ଧା ସହାନୁଭୂତି ପ୍ରଦର୍ଶନ କରୁଥିଲେ । ସାମନ୍ତଙ୍କ ଭାଗ୍ୟରେ ସେ ସବୁ କିଛି ଘଟିନଥିଲା । ସାମନ୍ତ ନିଜ ଅଧ୍ୟବସାୟବଳରେ ଯାହା କିଛି କରିଯାଇଛନ୍ତି । ବାସ୍ତବିକ କୁଆଡ଼େ ନଯାଇ କୌଣସି ଯନ୍ତ୍ରପାତି ନଦେଖି କାହାରଠାରୁ କୌଣସି ସହାନୁଭୂତି ନପାଇ ନିଜ ବୁଦ୍ଧିବଳରେ ଶାସ୍ତ୍ର ଗବେଷଣା ପୂର୍ବକ ଗଗନ ନିରୀକ୍ଷଣ କାର୍ଯ୍ୟରେ ସର୍ବଦା ସ୍ୱତରେ ବ୍ୟାପୃତରହି କାଠିଦ୍ୱାରା ଯନ୍ତ୍ର ଆବିଷ୍କାର କରି ଜ୍ୟୋତିର୍ମଣ୍ଡଳର ତଥ୍ୟ ନିର୍ଭୁଲ ଭାବରେ ଜାଣି ଗ୍ରନ୍ଥ ରଚନା କରିବା ଓ ବଳିଷ୍ଠ ଯୁକ୍ତି ଦ୍ୱାରା ପାଶ୍ଚାତ୍ୟ ବୈଜ୍ଞାନିକ ପ୍ରଭୃତିଙ୍କ ମତଖଣ୍ଡନ କରିବା ଏବଂ ନିଜ ନିର୍ମିତ ଯନ୍ତ୍ରସାହାଯ୍ୟରେ ପର୍ବତ ପ୍ରଭୃତିର ପରିମାଣ ଯଥାଯଥ ଭାବରେ ସ୍ଥିର କରିବା କି ଦୁଃସାଧ୍ୟ କାର୍ଯ୍ୟ କି ଅଦ୍ଭୁତ ପ୍ରତିଭା !! । ୭୬ ।

କଟକରେ ପାଶ୍ଚାତ୍ୟ ବୈଜ୍ଞାନିକ ପଣ୍ଡିତପ୍ରବର ଶ୍ରୀଥିବୋଟ୍ ସାହେବ ପୃଥିବୀ ଓ ସୂର୍ଯ୍ୟ ସମ୍ପର୍କରେ ଚଉଦଗୋଟି ପ୍ରଶ୍ନ ପଚାରି ତାର ଯଥାର୍ଥ ଉତ୍ତର ପାଇ ଯାହାଙ୍କୁ ଅତ୍ୟନ୍ତ ଆନନ୍ଦରେ ଉତ୍ତମ ଧନ୍ୟବାଦ ପ୍ରଦାନ କରିଥିଲେ । କିନ୍ତୁ ସାମନ୍ତଙ୍କର ଗୋଟିଏଗୋଟି ପ୍ରଶ୍ନର ଉତ୍ତର ସେ ଦେଇପାରି ନଥିଲେ । ୭୭ ।

ସେହି ସାହେବ ସଙ୍ଗେ ସଙ୍ଗେ ଜୋରରେ ତାଙ୍କର (ସାମନ୍ତଙ୍କର) କରମର୍ଦ୍ଦନ କରିଥିଲେ । ତାହା ନ ଦେଖି ସେଠାରେ ଥିବା ଗୁଣିବର ସୁକବି ଶ୍ରୀ ମଧୁସୂଦନ ରାଓ ଓ ବୈଜ୍ଞାନିକ ଯୋଗେଶ ଚନ୍ଦ୍ର ନିଜ ନିଜ ଛାତିକୁ ଆନନ୍ଦରେ ଫୁଲାଇ ପକାଇଥିଲେ । କିନ୍ତୁ ସାମନ୍ତ କୋମଳ ହସ୍ତରେ ତିନଦିନ ପର୍ଯ୍ୟନ୍ତ ଅତୀବ ବ୍ୟଥା ଅନୁଭବ କରିଥିଲେ । ୭୮ ।

ସେହି ଥିବୋଟ୍ ସାହେବଙ୍କ ସହିତ ଅନ୍ୟ ଦୁଇଜଣ ସାହେବ ଥିଲେ । ତନ୍ମଧ୍ୟରୁ ଜଣେ ସେତେବେଳେ ଆନନ୍ଦିତ ହୋଇ ସାମନ୍ତଙ୍କୁ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


କହିଲେ — ହେ ବିଦ୍ୱନ୍ ଯଦି ପୃଥିବୀ ବୁଲୁଛି ବୋଲି ଆପଣ କହିବେ । ତେବେ ଶ୍ରୀସର୍କାର ଆପଣଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହେବେ । ଆପଣ ମହା ଆନନ୍ଦରେ ରହିବେ । ୬୯ ।

ପୃଥିବୀରେ ଜ୍ୟୋତିଃଶାସ୍ତ୍ର ବିଶାରଦ କୌଣସି ପଣ୍ଡିତ କୌଣସି ଠାରେ ଯଦି ଯୁକ୍ତି ଦ୍ୱାରା ମୋର ମତ ଖଣ୍ଡନ କରିବାକୁ ସମର୍ଥ ହୋଇ ପାରିବେ, ତେବେ ମୋ ଗ୍ରନ୍ଥରେ ଥିବା ଭୂସ୍ଥିରତା ସମ୍ବନ୍ଧୀୟ ଲେଖାଗୁଡ଼ିକ ମୁଁ ବଦଳାଇ ଦେବି । ନହେଲେ ହେ ମନ୍ତ୍ରିମନ୍ ! ମୋ ମତହିଁ ସମୀଚୀନ ଅଟେ । ଏହା ଯେ ତାଙ୍କୁ ସ୍ଥିର ହୋଇ କହିଥିଲେ । ୭୦ ।

ସର୍ବଜନ ସମ୍ମାନିତ ହୃଦୟବାନ୍ ଚତୁର ବୁଦ୍ଧିସଂପନ୍ନ ବାରିଷ୍ଟର ମଧୁସୂଦନ ଦାସ ଯାହାଙ୍କର ଯୁକ୍ତିରେ ପରାଜିତ ହୋଇ ସମ୍ମୁଖରେ ସର୍ବଜନସ୍ୱ ଆନନ୍ଦର ସହିତ ଯୋଡ଼ହସ୍ତରେ ଯାହାଙ୍କୁ ଉତ୍କଳ ଚନ୍ଦ୍ରମା ବୋଲି କହିଥିଲେ । ସବୁବେଳେ ଯାହାଙ୍କର ଜ୍ଞାନ ସୁଗୌରବକୁ ଦେଶବିଦେଶରେ ପ୍ରକାଶ କରୁଥିଲେ । ୭୧ ।

ଏକ ସମୟରେ ସେହି ଶ୍ରୀଯୁକ୍ତ ମଧୁସୂଦନଙ୍କ ସହିତ ବାକ୍ୟାଳାପ କରୁଥିବା କୌଣସି ବିଲାତ ବାସିନ୍ଦା ସାହେବ ତାଙ୍କୁ ଆପଣ ଉତ୍ତମ ତୀକ୍ଷ୍ଣବୁଦ୍ଧିମାନ୍ ବୋଲି କହିଥିଲେ । ସେତେବେଳେ ସେ ତାଙ୍କୁ କହିଲେ--- ମୋ ଦେଶରେ ମୋଠାରୁ ଅଧିକ ପ୍ରତିଭାଶାଳୀ ଲୋକ ଅଛନ୍ତି, ଯେଉଁ ବଖଣ୍ଡ କାଠିସାହାଯ୍ୟରେ ଆକାଶର ଜ୍ୟୋତିର୍ଗଣ ଓ ପର୍ବତମାନଙ୍କୁ ମାପି ପାରୁଛନ୍ତି । ୭୨ ।

ସେହି ବିଦ୍ୱାନ୍ ଜଣକ କିଏ ବୋଲି ଅତିବିସ୍ମୟ ଓ ମହାଔତ୍ସୁକ୍ୟ ସହିତ ପ୍ରଶ୍ନକରିଥିବା ସାହେବଙ୍କୁ ସେ ସେତେବେଳେ ଆନନ୍ଦରେ କହିଥଲେ--ଖ୍ୟାତ ପବିତ୍ର ଉତ୍କଳ ପ୍ରଦେଶରେ କ୍ଷୁଦ୍ର

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

ଖଣ୍ଡପଡ଼ା ନାମକ କରଦ ରାଜ୍ୟରେ ଉତ୍ତମ ରାଜବଂଶରେ ଜାତ ସେହି ପଣ୍ଡିତ ଚନ୍ଦ୍ରଶେଖର ଏହି ନିଜ ନାମରେ ଖ୍ୟାତ ଯୁକ୍ତ ବ୍ୟକ୍ତି ବିଶେଷ ଅଟନ୍ତି । ୭୩ ।

ସେହି ବିଦ୍ୱାନ୍ ଚନ୍ଦ୍ରଶେଖର ସିଂହ ସାମନ୍ତ ଭୂଭ୍ରମଣ ମତବାଦ ଖଣ୍ଡନାତ୍ମକ ବହୁଯୁକ୍ତି ଯୁକ୍ତ ଅତି ଉତ୍ତମ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥଟିଏ ରଚନା କରିଅଛନ୍ତି । ଏହିପରି ଧୀମାନ୍ ମଧୁବାବୁ ଯାହାଙ୍କର ଗୁଣ ଗୌରବାବଳି କଥାକୁ ସେହି ସାହେବଙ୍କୁ କହି ନିଜ ଜନ୍ମଭୂମି ରୂପିଣୀ ଜନନୀର ମର୍ଯ୍ୟାଦାକୁ ବଢ଼ାଇଥିଲେ । ୭୪ ।

ଗୁଣଗ୍ରାହୀ ପ୍ରବଳ ପ୍ରତାପ ସବଳ ବିଳାତ ସରକାର ଯାହାଙ୍କର ଜ୍ଞାନ ଗବେଷଣାତ୍ମକ ବିଶାଳ କର୍ମଗୁଡ଼ିକ ହୃଦୟଙ୍ଗମ କରି ରାଜା ପଣ୍ଡିତ ଭଦ୍ରମଣ୍ଡଳୀମାନଙ୍କ ଦ୍ୱାରା ଦେଦୀପ୍ୟମାନ ଦରବାର ମଣ୍ଡପରେ ଉନ୍ନତ ମହାମହୋପାଧ୍ୟାୟ ପଦବୀ ପ୍ରଦାନ କରିଥିଲେ । ୭୫ ।

କବିବର ରାଧାନାଥ ମହୋଦୟ ଭକ୍ତି ସିକ୍ତ ହୋଇ ଦରବାର ପଦ୍ୟାବଳୀରେ ମର୍ମସ୍ପର୍ଶିନୀ ଭାଷାରେ ଯାହାଙ୍କର ପ୍ରଶଂସା କରିଅଛନ୍ତି । "ମଣ୍ଡିଅଛ କପାଁ ଆସି ସଭାଘର । ଉତ୍କଳ ଶେଖର ହେ ଚନ୍ଦ୍ରଶେଖର" ଇତ୍ୟାଦି ଦେଶ ଉଦ୍ଦେଶ୍ୟରେ ସ୍ୱସାଧକ ଉତ୍କଳମଣି ଶ୍ରୀ ଗୋପବନ୍ଧୁ ମଧ୍ୟ ସଂକ୍ଷେପରେ ସୁନ୍ଦର କବିତାରେ ଯାହାଙ୍କର ପ୍ରଶଂସାଗାନ କରିଅଛନ୍ତି । ତାହା ହେଉଛି ଏହା—

"ଉତ୍କଳ ଭାସ୍କର ହେ ଚନ୍ଦ୍ରଶେଖର ଋଷିପ୍ରଭ ମହାମତି ।
ସିଦ୍ଧାନ୍ତ ଦର୍ପଣେ ଲେଖି ଦେଖାଇଲ ଚନ୍ଦ୍ର ତାରା ଗ୍ରହ ଗତି ॥
ପାର୍ଥିବ ଶରୀରେ ରହିଛ ମହୀରେ କିନ୍ତୁ ଏଥି ନାହିଁ ତୃଷ୍ଣି
ଦିବ୍ୟଚକ୍ଷେ ନିତି ନିରେଖ ବିଧାତା ବିରଚିି ସରଗ ସୃଷ୍ଟି
॥ ଇତ୍ୟାଦି ॥ ୭୬ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ଗୋଳୀୟ ଜ୍ଞାନ ବିଶେଷରେ ସୂକ୍ଷ୍ମ ବୁଦ୍ଧି ସଂପନ୍ନ, ଅଥବା ଗୋଲ ଜ୍ଞାନ ବିଷୟରେ ବିଶେଷ ସୂକ୍ଷ୍ମ ବୁଦ୍ଧି ସଂପନ୍ନ, ପାଶ୍ଚାତ୍ୟ—ବୈଜ୍ଞାନିକ ପଣ୍ଡିତମାନଙ୍କର ଭୂଭ୍ରମଣ ବାଦଖଣ୍ଡନ କରିବାରେ ସମର୍ଥ, ପଣ୍ଡିତ ସଭାମଣ୍ଡନ, ଶ୍ରୀଧର ନୀଳାଚଳ ନାଥଙ୍କର ଭକ୍ତ, ସୂକ୍ଷ୍ମଜ୍ଞ ବିଜ୍ଞ ଜନମାନଙ୍କର ଅଗ୍ରଣୀ ଯେଉଁ ସାମନ୍ତ ଚନ୍ଦ୍ରଶେଖର ସର୍ବଦା ପ୍ରାଣୀମାନଙ୍କଠାରେ ବୁଦ୍ଧଦେବଙ୍କ ସମାନ ଅହିଂସ-ଥିଲେ । ୭୭ ।

ଯେ ଜ୍ୟୋତିଃଶାସ୍ତ୍ର ବିଚାର କାର୍ଯ୍ୟ ସମୟରେ ଶରୀର ପୀଡ଼ା ଓ ଧନାଭାବକୁ ଭୁଲିଯାଉଥିଲେ । ଉତ୍ତମ କର୍ମ କୁଶଳତା ହେତୁରୁ ନିଦ୍ରା, ତନ୍ଦ୍ରା ଭୟ, କ୍ରୋଧ, ଆଳସ୍ୟ, ଚିରନ୍ତିସୂତା ବର୍ଜନ କରିଥିଲେତ ବୃଥା କାଳଯାପନ କରୁନଥିଲେ । ସମୟକୁ ଶ୍ରେଷ୍ଠଧନ ବୋଲି ଜ୍ଞାନ କରୁଥିଲେ । ପ୍ରଭାତ ଏବଂ ସନ୍ଧ୍ୟାରେ ଜଗନ୍ନାଥ ମହାପ୍ରଭୁଙ୍କୁ ଧ୍ୟାନ କରୁଥିଲେ । ୭୮ ।

ଯେ ଶୀଘ୍ର ଅଶୀଘ୍ର ଆଦି ଭେଦରେ ଗ୍ରହମାନଙ୍କର ଗତି କ୍ରାନ୍ତି-ପାତାଦିନ ଏବଂ 'ଶଙ୍କୁଛାୟା, ଧନୁ, ଜ୍ୟା, ପଦକ, ଶରକଳାମାନ ଓ ସେ ସବୁର ସାଧନ, ଯନ୍ତ୍ରାବିଷ୍କାର, ଶତେଆଠ ପ୍ରସିଦ୍ଧ ସ୍ଥାନ (ଦେଶ ବିଦେଶସ୍ଥ) ମାନଙ୍କର ପଳାଂଶ, ବ୍ରହ୍ମାଣ୍ଡାନ୍ତ କକ୍ଷ ଆଦି ମଧ୍ୟ ନାନାପ୍ରକାର ବହୁ ନୂତନ ଆବିଷ୍କାର କରି ଯାଇ ଅଛନ୍ତି । ୭୯ ।

ଯେ ସତ୍ୟ ଓ ଅହିଂସା ଦ୍ୱାରା ବିପ୍ଳବକରି ଜୟଯୁକ୍ତ ହୋଇଥିବା ଗାନ୍ଧିଙ୍କପରି ସ୍ୱବୁଦ୍ଧିରଚିତ ସ୍ୱୟଂବହ ଓ ମାନଯନ୍ତ୍ର ଦ୍ୱାରା ମଣ୍ଡଳ ଚକ୍ର—ଗୋଲ ସମୂହର ତତ୍ତ୍ୱ ଗୁଡ଼ିକୁ ଜାଣି ନୂତନ ବିପ୍ଳବକରି ବିଭିନ୍ନମତ ଖଣ୍ଡନ ପୂର୍ବକ ଆଦର୍ଶ— ସିଦ୍ଧାନ୍ତ ଦର୍ପଣ ଦେଖାଇ ବିଜୟ ହାସଲ କରିଥିଲେ । ମହାତ୍ମାଗାନ୍ଧି ମଣ୍ଡଳ—ଦେଶ ତହିଁରେ ଘଟିଥିବା ଚକ୍ର—ସରକାରୀ ବୃତ୍ତାନ୍ତ ଜାଣି ବିଭିନ୍ନ ହିଂସା ବାଦ ଆଦିମତଖଣ୍ଡନ କରି ସତ୍ୟ, ଅହିଂସା ବଳରେ କେବଳ ସରକାର

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

ବିରୁଦ୍ଧରେ ଲଢି ବିଜୟସୁଲଭ କରି ଆଦର୍ଶ ଦେଖାଇ ଯାଇ ଅଛନ୍ତି । ୮୦ ।

ସର୍ବ ବ୍ୟାପକ ବ୍ରହ୍ମ କର୍ତ୍ତୃକ ଅଣ୍ଡ ଅର୍ଥାତ୍ ଡିମ୍ବସଦୃଶ ଗୋଲାକାର ସୂର୍ଯ୍ୟ ଚନ୍ଦ୍ର ପୃଥିବୀ ପ୍ରଭୃତିଙ୍କର ଶ୍ରେଷ୍ଠ ଗୋଲ—ଯନ୍ତ୍ରରଚକ, ଶାସ୍ତ୍ରୋଜ୍ଜ୍ୱଳ ବୁଦ୍ଧି ଦ୍ୱାରା ସୁପଣ୍ଡିତ ମାନଙ୍କର ସନ୍ତୋଷକାରୀ, ଜ୍ୟୋତିଃଶାସ୍ତ୍ରରେ ଅପ୍ରତିହତ ଉତ୍ତମ ଜ୍ଞାନର ସ୍ଥାନ, ନବଖଣ୍ଡ ମେଦିନୀର ପ୍ରକୃଷ୍ଟ ବିଭାଗ ବୋଧ ବିଧିଜ୍ଞ, ଧର୍ମ ଧ୍ୱଜୀ ଭଣ୍ଡ ଜନମାନଙ୍କର ବଚନ ଖଣ୍ଡନକାରୀ ଯେଉଁ ଚନ୍ଦ୍ରଶେଖର ଚଣ୍ଡାଳମାନଙ୍କ ପ୍ରତି ମଧ ଖଣ୍ଡ ଆସ୍ୱାଦ ତୁଲ୍ୟ ମଧୁର ବଚନ ବ୍ୟବହାର କରୁଥିଲେ । ୮୧ ।

ଯେ ବେଦାଦି । ଶାସ୍ତ୍ରୋଜ୍ଜ୍ୱଳ ବୁଦ୍ଧି ସମ୍ପନ୍ନ ନିଜ ଗୁରୁଦେବ ତଗିରିଆ ନିବାସୀ ଭୁବନେଶ୍ୱର ବଡ଼ପଣ୍ଡାଙ୍କଠାରୁ ସ୍ମୃତି ଦର୍ଶନ ଅଳଙ୍କାର ପଢୁଥିବାବେଳେ ତାଙ୍କଦ୍ୱାରା ଆଦୃତ ହେଉଥିଲେ । (ବିନୟୀ ପ୍ରତିଭାଶାଳୀ ଉତ୍ତମ ଶିଷ୍ୟଙ୍କୁ କେଉଁ ଗୁରୁ ବା ଆଦର ନ କରିବେ ) ଅବିନୀତ ବୁଦ୍ଧିହୀନ ଜ୍ୟୋତିଃଶାସ୍ତ୍ର ବୁଝିବାକୁ ଇଚ୍ଛୁକ ଶିଷ୍ୟମାନଙ୍କ ପ୍ରତି କଠୋରବାକ୍ୟ ପ୍ରୟୋଗ କରିବା ବିଷୟରେ ଯେ କୁଣ୍ଠାବୋଧ କରୁଥିଲେ । ନିଜ ନିର୍ମିତ ତାରକ ଯନ୍ତ୍ର ଦଣ୍ଡଦ୍ୱାରା ଯାହାଙ୍କ ହସ୍ତ ଶୋଭା ପାଉଥିଲା । ତଦାନିନ୍ତନ ଇଂଲଣ୍ଡାଦି ଦେଶବାସୀ ବିଶିଷ୍ଟ ବୈଜ୍ଞାନିକ ପଣ୍ଡିତମାନଙ୍କର ଯେ ଦୃଷ୍ଟି ଆକର୍ଷଣ କରି ପାରିଥିଲେ । ଦଣ୍ଡ ଆଦିକାଳର ସୂକ୍ଷ୍ମ ବିଭାଗ ଦ୍ୱାରା ଯେ ପୂର୍ଣ୍ଣ ଓ ଅପୂର୍ଣ୍ଣ ତିଥିର ପ୍ରମାଣ ନିର୍ଭୁଲ ଭାବରେ କରୁଥିଲେ । ୮୨ ।

ନିଗ୍ରହାନୁଗ୍ରହ ସମର୍ଥ ଉତ୍କଳପ୍ରଦେଶାଧିପ କମିଶନର ଶ୍ରୀମାନ୍ କେ.ଜି. ଗୁପ୍ତ ମହୋଦୟ ଯାହାଙ୍କ ସାକ୍ଷାତ୍କାର ସକାଶେ ତାଙ୍କ ଗୃହମଣ୍ଡପକୁ ଯାଇ କିଛି କ୍ଷଣ ଠିଆହୋଇ ଦଣ୍ଡ ପରିମିତ କାଳ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ଇଷ୍ଟଦେବାର୍ଚ୍ଚନ କର୍ମରେ ରତ ଥିବା ଯାହାଙ୍କୁ ୧୨ ମିନିଟ ସମୟ ଅପେକ୍ଷା କରି ଆସନାସୀନ ହୋଇଥିଲେ । (ଏଠାରେ ବୁଝିବାକୁ ହେବ ଯେ କମିଶନର ମହୋଦୟ ସାମନ୍ତଙ୍କ ଦ୍ୱାରକୁ ଗଲାବେଳକୁ ସେ ନିତ୍ୟ କର୍ମରେ ବସିଥିଲେ । ତାଙ୍କର ଅଧା ସମୟ ନିତ୍ୟ କର୍ମରେ ଅତିବାହିତ ହୋଇଥିଲା । ତାଙ୍କୁ ଖବର ଦେବାରେ ସେ କହିଲେ ମୁଁ ନିତ୍ୟ କର୍ମ ଶେଷ ନକରି ଯାଇପାରୁ ନାହିଁ । ସେ କିଛି ସମୟ ଅପେକ୍ଷା କରନ୍ତୁ । ନଚେତ୍ ମୁଁ ନିତ୍ୟ କର୍ମ ସାରି ତାଙ୍କ ବସାକୁ ଯାଇ ଦେଖା କରିବି । ଏହି ସଂବାଦ ପାଇ କମିଶନର ମହୋଦୟ ଅପେକ୍ଷିତ ସମୟ ଭଦ୍ରବ୍ୟକ୍ତିମାନଙ୍କ ସହ କଥୋପକଥନରେ କଟାଇ-ଥିଲେ । ତାପରେ ସାମନ୍ତଙ୍କ ସହ ତାଙ୍କର ଦେଖା ସାକ୍ଷାତ କଥୋପ-କଥନ ହୋଇଥିଲା । ଉଦ୍ଧତ ପ୍ରତି ପକ୍ଷମାନଙ୍କର ଦର୍ପରୂପକଖାପର ଖାନ୍ତିକୁ ହ୍ରାସ କରିବା ବିଷୟରେ ଯେ ସୂର୍ଯ୍ୟ ତୁଲ୍ୟ ଥିଲେ । (ସୂର୍ଯ୍ୟ ତେଜରେ ଖାପଶିଖାର ଖାନ୍ତି ହ୍ରାସ ପ୍ରାପ୍ତ ହୁଏ) ସେହି ଖଣ୍ଡପଡ଼ା ପୁଅ ଶ୍ରୀମାନ୍ ଚନ୍ଦ୍ରଶେଖର ସକଳ-ଭୂଲୋକ ଭୂଷଣ ଥିଲେ । ୮୩ ।

ଦଣ୍ଡାଦିକାଳର କ୍ଷୟ ବୃଦ୍ଧି ସମ୍ପର୍କୀୟ ସୂକ୍ଷ୍ମ ଗଣନା ବିଭାଗରେ ଆବିର୍ଦ୍ୱାନ୍ ଯାହାଙ୍କ ପାଖରେ ଗଣ୍ଡସ୍ଥଳ ଶୋଭିତ କୁଣ୍ଡଳ ମଣ୍ଡିତ ଉତ୍ତମ ଗଣକ ପଣ୍ଡିତମାନେ ଶିଷ୍ୟତୁଲ୍ୟ ଦଣ୍ଡାୟମାନ ହେଉଥିଲେ । ଯେ ଗଣ୍ଡ, ଅତିଗଣ୍ଡ, ବ୍ୟତିପାତ, ବ୍ୟାଘାତ, ଶୁଭ, ଶୋଭନ ପ୍ରଭୃତି ଯୋଗ ସ୍ମରଣ କରିବା ବିଷୟରେ ପୌଗଣ୍ଡ ସମୟରୁ ଆରମ୍ଭ କରି ଆଗ୍ରହୀ ଥିଲେ । ଯାହାଙ୍କର ବଚନ ବୃଦ୍ଧ ବ୍ୟକ୍ତିମାନଙ୍କର ମଧ୍ୟ ହର୍ଷକାରକ ହେଉଥିଲା । ସେହି ଚନ୍ଦ୍ରଶେଖର ଦୈନନ୍ଦିନ ଦଣ୍ଡବେଳା ଗୁଡ଼ିକ ଶାସ୍ତ୍ରଚର୍ଚ୍ଚାଜନିତ ଆନନ୍ଦରେ ଅତିବାହିତ କରୁଥିଲେ । ୮୪ ।

ସେହି ସାମନ୍ତ ଚନ୍ଦ୍ରଶେଖର ଜଗନ୍ନାଥ ଦର୍ଶନ ଉଦ୍ଦେଶ୍ୟରେ ପୁରୁଷୋତ୍ତମ କ୍ଷେତ୍ରକୁ ଯାଉ ଯାଉ ଖଣ୍ଡେ ବାଟରୁ ନୀଳଚକ୍ର ଓ ଶକ୍ତିଶାଳୀ ଦଣ୍ଡାଗ୍ରରେ ଉଡ୍ଡୀୟମାନ ଧ୍ୱଜକୁ ଦର୍ଶନ କରି ମହାଆନନ୍ଦର ସହିତ କୃତାଞ୍ଜଳିପୂର୍ବରେ ଜଗନ୍ନାଥଙ୍କ ନିକଟକୁ ଯାଇ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

ତାଙ୍କ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ଡ଼ଠି ମୋତେ ଯମ ଯାତନାଦି ସର୍ବବିଧ ଦଣ୍ଡରୁ ରକ୍ଷା କରିବ ବୋଲି ଦଣ୍ଡେ କାଳ ସ୍ତୁତିପାଠ ସହି ଜଣାଉ ଜଣାଉ ତତ୍‌ପର୍ଯ୍ୟ ପଣ୍ଡାଙ୍କ ଦ୍ୱାରା ଦତ୍ତ ପାଦପଦ୍ମୋଦକ ସହିତ ଶ୍ରୀଚରଣ ତୁଳସୀ ଖଣ୍ଡକୁ ସେବନ କରିଥିଲେ । ୮୫ ।

ଦଣ୍ଡ ଯୋଗ୍ୟ ଶରଣାଗତ ଜନମାନଙ୍କୁ ଯମଯାତନାରୁ ରକ୍ଷା କରୁଥିବା ଯାହାଙ୍କର ରଥରେ ପୂର୍ଣ୍ଣ ଗଜପତି ଚଣ୍ଡାଳ ଲୋକ ସଦୃଶ ଆଚରଣ କରନ୍ତି, ଅର୍ଥାତ୍ ଛେରା ପହଁରା କରନ୍ତି । ଯାହାଙ୍କ ପୁରରେ ମହାପାତକୀ ଚଣ୍ଡାଳ ମଧ୍ୟ ମରିଗଲେ ସଂସାର ସାଗରରୁ ତରିଯାଏ, ସେହି ଜଗନ୍ନାଥଙ୍କ ଆଗରେ ଶାନ୍ତ ସ୍ୱଭାବ ସେହି ଚନ୍ଦ୍ରଶେଖର ଦଣ୍ଡାୟମାନ ହୋଇ ଆତ୍ମସମର୍ପଣ କରିଥିଲେ । ୮୬ ।

ଏହି ଶ୍ଳୋକର ଅର୍ଥ ନବଗ୍ରହ ଓ ସାମନ୍ତଙ୍କ ପକ୍ଷରେ ଶ୍ଳେଷୋପମାଳଙ୍କାର ଯୁକ୍ତ ହୋଇଅଛି ।—

ସୂର୍ଯ୍ୟଙ୍କର ହରିନାମ ସ୍ମୃତି ପ୍ରଭୃତି ଶାସ୍ତ୍ରମାନଙ୍କରେ କୀର୍ତ୍ତନ କରାଯାଇଛି ।

"ହରିରନ୍ଦ୍ରୋହରୌ ଭାନୁର୍ହରିର୍ବିଷ୍ଣୁର୍ହରିର୍ମରୁତ୍" ଇତି ଅନେକାର୍ଥ ଧ୍ୱନି ମଞ୍ଜରୀ ।"

"ବନ୍ଦଇ ଦିନ ବାନ୍ଧବ ହରି" ବୈଦେହୀଶବିଳାସ ପ୍ରଥମ ପଦ୍ୟାଂଶ ।

ସାମନ୍ତ—ହରିନାମର-ବିଷ୍ଣୁ ନାମର ସ୍ମରଣ କୀର୍ତ୍ତନ କରୁଥିଲେ ।

ଚନ୍ଦ୍ର—ବୁଧଙ୍କମୁଦ-ହର୍ଷତାର ସ୍ଥାନ-ଆସ୍ପଦ । (ପିତା ପୁତ୍ର ସମ୍ବନ୍ଧ ହେତୁରୁ)

ସାମନ୍ତ—ବୁଧ-ଦେବତା ଓ ପଣ୍ଡିତ ସେମାନଙ୍କ ଆନନ୍ଦର ସ୍ଥାନ । ସେ ପୂଜାସ୍ତୋତ୍ରପାଠାଦି ଦ୍ୱାରା ଦେବତାମାନଙ୍କୁ ଓ ସମ୍ମାନ ପ୍ରଦର୍ଶନ ପୂର୍ବକ ଶାସ୍ତ୍ରଚର୍ଚ୍ଚା ଦ୍ୱାରା ପଣ୍ଡିତମାନଙ୍କୁ ସନ୍ତୁଷ୍ଟ କରୁଥିଲେ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ମଙ୍ଗଳଙ୍କର ସ୍ଥିର—ପୃଥିବୀ ତାଠାରୁ ଆତ୍ମୋଦୟ—ଆବିର୍ଭାବ ହୋଇଅଛି । ସାମନ୍ତ ସ୍ଥିର ଆତ୍ମା—ସ୍ଥିର ସ୍ୱଭାବ ଧରି ଆବିର୍ଭୂତ ହୋଇଥିଲେ । ଅଥବା ସ୍ଥିର—ଅଚଳ ଆତ୍ମୋଦୟ—ଆତ୍ମୋନ୍ନତି ଯାହାଙ୍କର ।

ବୁଧ—ରାଜା—ଚନ୍ଦ୍ର ତାଙ୍କଠାରୁ ଜନ୍ମଲାଭ କରିଅଛନ୍ତି ।

ସାମନ୍ତ—ରାଜା—କ୍ଷତ୍ରିୟ ଶ୍ରୀ ଶ୍ୟାମବନ୍ଧୁ ସିଂହସାମନ୍ତଙ୍କର ଆତ୍ମଜ ଅଟନ୍ତି ।

ବୃହସ୍ପତି—ସୁମନା—ଦେବତା ସେମାନଙ୍କର ଗୁରୁ ଅଟନ୍ତି ।

ସାମନ୍ତ—ସୁମନା—ପଣ୍ଡିତ (ଗଦାଧର ବିଦ୍ୟାଭୂଷଣ, ରାଜବଲ୍ଲଭ ମିଶ୍ର ପ୍ରଭୃତି) ସେମାନଙ୍କର ଗୁରୁଥିଲେ ।

ଶୁକ୍ର—ଜ୍ୟୋତିର୍ଗଣଙ୍କ ମଧ୍ୟରେ ପ୍ରସିଦ୍ଧ ଏବଂ କବି ନାମ-ଧାରୀ ଅଟନ୍ତି ।

ସାମନ୍ତ—ଜ୍ୟୋତିଃଶାସ୍ତ୍ରରେ ପ୍ରସିଦ୍ଧ କବି । (ସିଦ୍ଧାନ୍ତ ଦର୍ପଣ ରଚୟିତା ) ।

ଶନୈଶ୍ଚର—ଶ୍ରୀ ଭାସ୍କର—ଶ୍ରୀ ସୂର୍ଯ୍ୟ ତାଙ୍କଠାରୁ ଶକ୍ତିଶାଳୀ ଜନ୍ମ ଲାଭ କରିଅଛନ୍ତି ।

ସାମନ୍ତ—ଶ୍ରୀ ଭାସ୍କରସୂର୍ଯ୍ୟଙ୍କ ପରି ଶକ୍ତିଶାଳୀ ଜନ୍ମଲାଭ କରିଥିଲେ ।

ରାହୁ—ବିଧୁ—ଚନ୍ଦ୍ର ତାଙ୍କଠାରେ ଉଗ୍ର ଦୃଷ୍ଟିପାତ କରନ୍ତି ।

ସାମନ୍ତ—ବିଧି—ଶାସ୍ତ୍ରୀୟ ନିୟମ ସେ ବିଷୟରେ ସୂକ୍ଷ୍ମ ଦୃଷ୍ଟିପାତ କରୁଥିଲେ ।

କେତୁ—ବିଶ୍ୱବ୍ୟାପ୍ତ ପ୍ରସିଦ୍ଧି ଯୁକ୍ତ କେତୁ ନାମକୁ ଧାରଣ କରିଅଛନ୍ତି ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

ସାମନ୍ତଙ୍କର ପ୍ରସିଦ୍ଧିକେତୁ—ଖ୍ୟାତିପତାକା ବିଶ୍ୱ ମଧ୍ୟରେ ବ୍ୟାପ୍ତ ହୋଇଅଛି । ଉକ୍ତ ଗ୍ରହଗଣ ଭୂଷା ବିଶେଷଣ ବିଶିଷ୍ଟ ସେହି ସାମନ୍ତ ସର୍ବଦା ଗ୍ରହମାନଙ୍କୁ ଧ୍ୟାନ କରି କରି ସର୍ବ ଗ୍ରହ ଭୂଷା ହୋଇଥିଲେ । ୮୭ ।

ଏହି ଶ୍ଳୋକର ଅର୍ଥ ଭୂମି ଓ ସାମନ୍ତଙ୍କ ପକ୍ଷରେ ସାମ୍ୟରେ ବର୍ଣ୍ଣନା କରାଯାଇଛି ।

ଭୂମିର ଶରୀର ସର୍ବଦା ଉତ୍ତମ ଗୁଣଯୁକ୍ତ ରତ୍ନମାନଙ୍କ ଦ୍ୱାରା ଭୂଷିତ ହୋଇଛି । ସେ ରତ୍ନଗର୍ଭା ବସୁନ୍ଧରା । ସାମନ୍ତଙ୍କ ଶରୀର ସଦା ଦୟାଦାକ୍ଷିଣ୍ୟ ବିନୟାଦି ସଦ୍‌ଗୁଣ ରୂପକ ରତ୍ନଦ୍ୱାରା ଭୂଷିତ ହୋଇଥିଲା । ଭୂମି ସର୍ବଂସହା ଓ ସ୍ଥୈର୍ଯ୍ୟବତୀ ଅଟେ । ସାମନ୍ତ ସର୍ବଂସହା-ପୃଥିବୀ ସେପରି ସ୍ଥୈର୍ଯ୍ୟଶାଳୀ ଥିଲେ ଏବଂ ପୃଥିବୀର ସ୍ଥୈର୍ଯ୍ୟ ପ୍ରତିପାଦନ କରିଅଛନ୍ତି ।

ପୃଥିବୀ ପରମେଶ୍ୱରଙ୍କ ସଂସାର ମଧ୍ୟରେ ସ୍ଥାବର ଜଙ୍ଗମ ନାନା ଶରୀରଧାରୀମାନଙ୍କର ମାତା ଅଟେ ।

ସାମନ୍ତ ପରମେଶ୍ୱରୀୟ ଭୁବନ ମଧ୍ୟରେ ନାନାଶରୀରଧାରୀ ପୃଥିବୀ ଗ୍ରହ ନକ୍ଷତ୍ର ପର୍ବତ ମହାସମୁଦ୍ରାଦିମାନଙ୍କର ମାତା ଗାଣିତିକ ପ୍ରମାଣକର୍ତ୍ତା ଥିଲେ ।

ପୃଥିବୀ ଦୁର୍ବା ଦ୍ୱାରା ଶ୍ୟାମଳ ସୁନ୍ଦର ବିଗ୍ରହ ରୁଚି ଧାରଣ କରିଅଛି । ସାମନ୍ତ-ଦୁର୍ବାଶ୍ୟାମଳ ସୁନ୍ଦର ତନୁଧାରୀ ବିଷ୍ଣୁଙ୍କଠାରେ ରୁଚିସମ୍ପନ୍ନ ଥିଲେ । ଅର୍ଥାତ୍ ବିଷ୍ଣୁଙ୍କର ପରମ ଭକ୍ତ ଥିଲେ । ପୃଥିବୀର ବିଶ୍ୱମ୍ଭରା ଆଖ୍ୟା--ନାମ ଶ୍ରୁତି ଆଦି ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଅଛି । ସାମନ୍ତ ବିଶ୍ୱମ୍ଭର ଆଖ୍ୟା — ବିଷ୍ଣୁଙ୍କ ନାମ ସହସ୍ର ନାମ ପ୍ରଭୃତି ଭକ୍ତି ସହକାରେ ଶ୍ରବଣ କରୁଥିଲେ । ହରିନାମ ଶ୍ରବଣ ନବଧା ଭକ୍ତିର ପ୍ରଥମ ଅଟେ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ପୃଥିବୀ ମଙ୍ଗଳ ଭାବର --ମଙ୍ଗଳ ଗ୍ରହ ଉତ୍ପତ୍ତିର ଭଜନ ଅଟେ । ମଙ୍ଗଳ ଭୂମି ପୁତ୍ର ଅଟନ୍ତି ।

ସାମଂତ ମଙ୍ଗଳ ଭାବର -- କୁଶଳ ଭାବନାର ଭଜନ - ପାତ୍ର ଥିଲେ । ଉକ୍ତ ବିଶେଷଣ ବିଶିଷ୍ଟ ସାମଂତ ଭୂଭାବନା ଦ୍ୱାରା ଉତ୍ତମ ଥିଲେ । ୮୮ ।

ଏହି ଶ୍ଳୋକରେ ଆକାଶ ସାମ୍ୟରେ ସାମଂତଙ୍କୁ ବର୍ଣ୍ଣନା କରାଯାଇଛି ।

ଆକାଶ କ୍ଷୁଦ୍ର, ବୃହତ୍, ଚଳ, ଅଚଳ, ଅସୀମ ବ୍ରହ୍ମାଣ୍ଡକୁ ସମ୍ୟକ୍ ରୂପେ ଧାରଣ କରିଅଛି ।

ସାମଂତ କ୍ଷୁଦ୍ର, ବୃହତ୍, ଚଳ, ଅଚଳ ଅସୀମ ବ୍ରହ୍ମାଣ୍ଡ ବିଷୟରେ ଉତ୍ତମ ଧାରଣାଯୁକ୍ତ ଥିଲେ ।

ଆକାଶ ପୁଣି ବସ୍ତୁପ୍ରଦ ଅଭିଧାନ-ନାମ ତାହାଁରେ ବିଦିତ ଅଟେ । ସାମଂତଙ୍କୁ ବସ୍ତୁଙ୍କ ପଦାଭିଧାନ ବିଦିତ; ଥିଲା । ଆକାଶ ଅନନ୍ତ ସଂଜ୍ଞାଧାରୀ ଅଟେ ।

ସାମଂତ ଅନଂତ-ଅସୀମ ସଂଜ୍ଞା-ଚେତନା ଶକ୍ତି ତାହାଁରେ ସଂପନ୍ନ ଥିଲେ । ଅଥବା ଅନଂତ - ଆକାଶ ବା ବସ୍ତୁଙ୍କ ବିଷୟରେ ସମ୍ୟକ୍ ଜ୍ଞାନ ସଂପନ୍ନ ଥିଲେ । ( ସିଦ୍ଧାଂ ଦର୍ପଣରେ ଖଗୋଳ ନିର୍ଣ୍ଣୟ ଓ ଜଗନ୍ନାଥଙ୍କ ସ୍ତୁତି ରଚନା ତାହାର ପ୍ରମାଣ ଦିଏ ) । ଆକାଶ ସଂପୂଜ୍ୟ ଅମରମାନଙ୍କର ମାର୍ଗ ଏବଂ ଶବ୍ଦ ଗୁଣ ସଂପନ୍ନ ଅଟେ ।

ସାମଂତ ସଂପୂଜ୍ୟ ଅମର ସିଂହଙ୍କ ଦ୍ୱାରା ପ୍ରଦର୍ଶିତ ମାର୍ଗାନୁସାରେ ଶବ୍ଦାବଳୀର ଆବୃତ୍ତି କରୁଥିଲେ ଓ ତାର ଉତ୍କର୍ଷ ପ୍ରକାଶ କରୁଥିଲେ । ସେ ଅମରକୋଷରେ ଥିବା ପୃଥିବୀ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha


ପର୍ଯ୍ୟାୟରେ ସ୍ଥିରା, ଅଚଳା, ଅନନ୍ତା ଇତ୍ୟାଦି ଶବ୍ଦକୁ ସମର୍ଥନ କରି ସିଦ୍ଧାନ୍ତ ଦର୍ପଣରେ ଲେଖି ଅଛନ୍ତି । ଆକାଶ ପରମ ମହା ପରିମାଣ ଗୁଣଶାଳୀ ଅଟେ । ସାମନ୍ତ ଅତ୍ୟନ୍ତ ସମ୍ମାନର ଆସ୍ପଦ ଅଟନ୍ତି ।

ଆକାଶରେ ସଦାଗତି—ବାୟୁ ତାହାର ଗତି ସର୍ବଦା ହୋଇଥାଏ । ସାମନ୍ତଙ୍କ ପାଖକୁ ( ସତ୍ + ଆଗତ = ସଦାଗତ ) । ସତ୍ ଲୋକମାନଙ୍କର ଆଗତ — ଆଗମନ ଓ ଗତ--ଗମନ ସବୁବେଳେ ହେଉଥାଏ । ଅର୍ଥାତ୍ ତାଙ୍କୁ ସାକ୍ଷାତ୍କାର କରିବାପାଇଁ ସର୍ବଦା ସଜ୍ଜନମାନେ ଯିବା ଆସିବା କରନ୍ତି । ଏହି ପରି ବିଶେଷଣ ବିଶିଷ୍ଟ ସେହି ସାମନ୍ତ ସର୍ବଦା ଆକାଶ ତତ୍ତ୍ୱ ନିରୀକ୍ଷଣ କରି କରି ତଦାକାରିତ ଚିତ୍ତବୃତ୍ତି ହେବାରୁ ଆକାଶ ତୁଲ୍ୟ ହୋଇଥିଲେ । ୮୯ ।

ସେହି ଚନ୍ଦ୍ରଶେଖର ନିଜର ମୃତ୍ୟୁଦିବସ ନିଜେ ଗଣନା ଦ୍ୱାରା ଜାଣି ପୁରୀ ଯାଇ ସେହି ନୀଳାଚଳ ନାଥ ହରି ଶ୍ରୀଜଗନ୍ନାଥଙ୍କୁ ନିଜର ଦୁଃଖ ଜଣାଇ ଭକ୍ତସହକାରେ ତଦୀୟ ପୁରୀ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବାସକରି ନିର୍ଦ୍ଦିଷ୍ଟ ଦିନରେ ପ୍ରଭୁ ଜଗନ୍ନାଥଙ୍କ ନାମ ଉଚ୍ଚାରଣ କରି କରି ନୀଳଚକ୍ରକୁ ଚାହିଁ ସ୍ୱର୍ଗପୁରକୁ ଚାଲିଗଲେ । ୯୦ ।

ଅନ୍ତର୍ଯ୍ୟାମୀ ନାରାୟଣ ଯେପରି ବ୍ରହ୍ମାଣ୍ଡକୁ ଉଦର ମଧ୍ୟରେ ଦେଖନ୍ତି, ସେହିପରି ଜ୍ୟୋତିଃଶାସ୍ତ୍ରଜ୍ଞାନରୂପକ ଚକ୍ଷୁଦ୍ୱାରା ବ୍ରହ୍ମାଣ୍ଡ ଗୋଲକୁ ଯେ ହୃଦୟ ମଧ୍ୟରେ ଦେଖୁଥିଲେ । ଉତ୍ତମ ପ୍ରତିଭା ପ୍ରତିଷ୍ଠିତ ହୋଇଥିବା ହେତୁରୁ ଲୋକମାନେ ସର୍ବଦା ଯାହାଙ୍କୁ ସ୍ମରଣ କରୁଅଛନ୍ତି । ସେହି ସାମନ୍ତ ମହୋଦୟ ମରି ମଧ୍ୟ ଅମର ରୂପେ ନିତ୍ୟ ଜୟଯୁକ୍ତ ହେଉଅଛନ୍ତି । ୯୧ ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ପୃଥିବୀରେ ଜ୍ଞାନାଲୋକରେ ଆଲୋକିତ ହୋଇ ସିଦ୍ଧାନ୍ତ-ଦର୍ପଣ ସର୍ବଦା ଜିଜ୍ଞାସୁ ଜନମାନଙ୍କୁ ଯେ ପର୍ଯ୍ୟନ୍ତ ବାରମ୍ବାର ବସ୍ତୁ ସମର୍ପଣ କରୁଥିବ । "ଯାହାର କୀର୍ତ୍ତିଅଛି, ସେ ବଞ୍ଚିଛି" ଏହି ଉକ୍ତିର ଯଥାର୍ଥଭାବାର୍ଥ ମୁଁ କହୁଛି—ସେ ପର୍ଯ୍ୟନ୍ତ ସେହି ସୂରି ସମ୍ରାଟ ଚନ୍ଦ୍ରଶେଖର କାଳଘନ ହେତୁରୁ ଅଦୃଶ୍ୟ ହେଲେ ମଧ୍ୟ ରହିଥିବେ । ୯୨ ।

ସମସ୍ତ ପ୍ରଭୁ ଗୁଣାନ୍ୱିତ ସହୃଦୟ ସାଧୁସ୍ୱଭାବ ପ୍ରଜାବତ୍ସଳ ପୂର୍ବ ବର୍ଣ୍ଣିତ ରାଜା ହରିହର ଖଣ୍ଡପଡ଼ା ଗଡ଼ରେ ଚନ୍ଦ୍ରଶେଖରଙ୍କ ନାମରେ ଯେଉଁ ବୃହତ୍ ମୁଦ୍ରଣ-ଯନ୍ତ୍ରାଳୟ ଉଦ୍‌ଘାଟନ କରି ତାହାର ସୁପରିଚାଳନା କରୁଥିଲେ, ଜନହିତକର ସେହି ଯନ୍ତ୍ରାଳୟର କାର୍ଯ୍ୟ ସରକାରୀ ସଂସ୍ଥା ଅନ୍ତର୍ଭୁକ୍ତ ଓ ଆବଶ୍ୟକ ଉପକରଣ ଦ୍ୱାରା ଯୁକ୍ତ ହୋଇ ଉତ୍ତମ ରୂପେ ବର୍ତ୍ତମାନ ପରିଚାଳିତ ହେଉଅଛି ଏବଂ ପ୍ରତିବର୍ଷ ସେହି ଗୃହ ସମୀପରେ ସେହି ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କର ସ୍ମରଣୀୟ ପବିତ୍ର ଶୁଭ ଜନ୍ମଦିବସରେ ଅତି ସୁନ୍ଦର ସମାରୋହପୂର୍ଣ୍ଣ ଗୌରବ ସଂପନ୍ନ ବିଶାଳ ସଭା ହେଉଅଛି । ୯୩ । ୯୪ ।

ସେହି ଚନ୍ଦ୍ରଶେଖରଙ୍କ ନାମରେ ପୁରୀ ମହାବିଦ୍ୟାଳୟ ନାମିତ ହୋଇ ଅଛି । କୌଣସି କୌଣସି ଠାରେ ସ୍ମୃତି ମନ୍ଦିର ଥିବାର ଦେଖାଯାଏ । ପାଠାଗାରମାନ ମଧ୍ୟ କରା ହୋଇ ଅଛି । କେଉଁଠି କେଉଁଠି ପ୍ରତିମୂର୍ତ୍ତିମାନ ମଧ୍ୟ ସ୍ଥାପିତ ହୋଇଛି । ଗୁଣିଗଣା-ଗ୍ରଣୀ ସେହି ମହାତ୍ମାଙ୍କର ସେ ସବୁଦ୍ୱାରା ସ୍ମୃତିପୂଜନ ଯଥେଷ୍ଟ ନୁହେଁ । ହାୟ !! ଦୁଃଖର କଥା ତାଙ୍କ ଜୀବଦ୍ଦଶାରେ ଏହି ଉତ୍କଳ ମାଟିରେ ତାଙ୍କର ଅର୍ଚ୍ଚନା ଯାହା କେହି କଲେ ନାହିଁ । କବିବର ରାଧାନାଥ ରାୟ ଏ ସମ୍ବନ୍ଧରେ ମର୍ମସ୍ପର୍ଶୀ ଦରବାର ପଦ୍ୟରେ ଦୁଃଖ ପ୍ରକାଶ କରି ଲେଖିଅଛନ୍ତି ।

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha

ଉତ୍କଳ ଉଦୟ ଅଚଳେ ଭାସ୍କର
ହେଲ ଭାରତର ବିଖ୍ୟାତ ଭାସ୍କର ।
ମାତ୍ର ହେଲ୍ ଯେହ୍ନୁଁ ତୁମ୍ଭର ପ୍ରସୃତି
ନ ଚିହ୍ନିଲ୍ ସେ ତ ନିଜର ବିଭୂତି ।
ଗୁଣଜ୍ଞ ଉତ୍କଳେ ଜଣେ କେହିନାହିଁ
ଗୁଣୀନ୍ଦ୍ର ! ତୁମ୍ଭର ହେବ ଗୁଣଗ୍ରାହୀ ।
ସଜ୍ଜନ ନସିଞ୍ଚି ଖାଲି ଦଣ୍ଡବତ
କରିବାକୁଛନ୍ତି ଲୋକ ଶତ ଶତ ।
ଥାଉଁ କି ଶ୍ରୀରାମଚନ୍ଦ୍ର ନାରାୟଣ
ବୟସେ କିଶୋର ଜ୍ଞାନେ ବର୍ଷୀୟାନ ।
ଥାଉଁ ଥାଉଁ ବାସୁଦେବ ନୃପବର
ବିଦ୍ୱାନ ମରାଳ କୁଳ ପଦ୍ମାକର ।
ନରେଶ ମହେନ୍ଦ୍ର ସ୍ୱଦେଶ ଗୌରବ
ଗୁଣିବୃନ୍ଦ ଅଭିବନ୍ଦନ ବାନ୍ଧବ ।
ତୁମ୍ଭ ପରି ଜ୍ଞାନ ତରୁ ମଉଳିଲ୍
ଏହା ଦେଖିବାକୁ ବିଧି ଲେଖିଥିଲ୍ । ୯୫ ।

ଏବେ ଶ୍ରୀ ଭୁବନେଶ୍ୱର, କଟକ, ବାଲେଶ୍ୱର, ଭଦ୍ରକ, ପୁରୀ, ବ୍ରହ୍ମପୁର, ସମ୍ବଲପୁର ଏବଂ ତାଙ୍କ ଜନ୍ମଭୂମି ଖଣ୍ଡପଡ଼ା ଆଦି ସ୍ଥାନ ମାନଙ୍କରେ ତତ୍ ସନ୍ଧାନ୍ତ ସଭା ଗୁଡ଼ିକରେ ତାଙ୍କ ପ୍ରତି-ମୂର୍ତ୍ତିରେ ମାଲ୍ୟାର୍ପଣ ଶୋଭା ପାଉଛି । ବଡ଼ ଦୁଃଖର କଥାଯେ କୌଣସି ଠାରେ ତାଙ୍କ ଜୀବନ କାଳ ମଧ୍ୟରେ ଦରବାର ବ୍ୟତୀତ ସଭାଟିଏ କରି ତାଙ୍କ ଗଳାରେ ଫୁଲ ମାଳଟିଏ କେହି ଦେଇ ନାହିଁ । ୯୬ ।

ଗୁଣବାନ୍ ବଙ୍ଗୀୟ ଜନମାନେ ସର୍ବଦା ଗୁଣୀ ଲୋକମାନଙ୍କର ଗୁଣକୁ ଜାଣିପାରନ୍ତି । ଶ୍ରୀମାନ୍ ବିଶ୍ୱ କବି ରବୀନ୍ଦ୍ର ଶ୍ରୀଗାନ୍ଧିଙ୍କୁ ମହାତ୍ମା ପଦବୀ ପ୍ରଦାନ କରିଥିଲେ । ଶ୍ରୀ ଗୋପବନ୍ଧୁଙ୍କୁ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ରାୟ

CC-0. Prof. Satya Vrat Shastri Collection.

Digitized By Siddhanta eGangotri Gyaan Kosha



ଉତ୍କଳମଣି ବୋଲି କହିଥିଲେ । ଶ୍ରୀ ଯୋଗେଶ ଚନ୍ଦ୍ର ରାୟ ଓ ଶ୍ରୀ ମହେଶ ଚନ୍ଦ୍ର ନ୍ୟାୟରତ୍ନଙ୍କ ଯତ୍ନରୁ ସେହି ସାମନ୍ତ ଚନ୍ଦ୍ର ଶେଖର ମଧ୍ୟ ମହାମହୋପାଧ୍ୟାୟ ଉପାଧିରେ ଭୂଷିତ ହୋଇଥିଲେ । ୯୭ ।

ରାଧାନାଥଙ୍କ ବଚନ ଅନୁବାଦକରି ମୁଁ କହୁଛି— କୌଣସି ଜଣେ ଗୁଣଜ୍ଞ ଲୋକ ଓଡ଼ିଶାରେ ନାହିଁ, ହେ ଗୁଣନିଧେ ଯେ କି ଆପଣଙ୍କର ଗୁଣ ଗ୍ରହଣ କରିବ । ସନ୍ମାନ ନ ଦିଅି ଶତ ଶତ ଲୋକ ବୃଥା ଖାଲି ଦଣ୍ଡବତ କରନ୍ତି । ବିଦ୍ୱାନ୍ ରାଜା ରାମଚନ୍ଦ୍ର ଅଥବା ନୃପ ନାରାୟଣ ଭୂମିଙ୍କୁ ଜାଣିପାରିଲେ ନାହିଁ । ୯୮ ।

କୋବିଦ ରାଜହଂସ କୁଳ ପଦ୍ମାକର ବିଦ୍ୱାନ୍ ଶ୍ରୀମାନ୍ ବାସୁଦେବ ଓ ରାଜା ମହେନ୍ଦ୍ର ଥାଉଁ ଥାଉଁ ଭୂମି ପରି ଜ୍ଞାନ ଚକ୍ଷୁ ଶୋଚନୀୟ ମ୍ଳାନ ଦଶାକୁ ପ୍ରାପ୍ତହେଲ । ଏହା ଦେଖିବାକୁ ଆମ୍ଭ ଭାଗ୍ୟରେ ବିଧାତା କାହିଁକି ଲେଖିଥିଲ । ୯୯ ।

ନବ୍ୟ ସମୁଜ୍ଜ୍ୱଳ ହୀରକ ଗାଢ଼ ଅନ୍ଧକାରରେ ଥିଲେ ମଧ୍ୟ ଅତି ଦୀପ୍ତିମାନ୍ ହୋଇଥାଏ । ରତ୍ନ ପୃଥିବୀର ସାତତାଳ ତଳେ ଥିଲେ ମଧ୍ୟ ମୂଲ୍ୟବାନ୍ ଅଟେ । ସେହି ପରି ସୁବର୍ଣ୍ଣ ପଙ୍କ ମଧ୍ୟରେ ପଡ଼ିଥିଲେ ମଧ୍ୟ ମୂଲ୍ୟହୀନ ହୁଏ ନାହିଁ । ସାମନ୍ତ ଚୂଡ଼ାମଣି ଶ୍ରୀମାନ୍ ଚନ୍ଦ୍ରଶେଖର ଅସ୍ଥାନସ୍ଥ ହୋଇଥିଲେ ମଧ୍ୟ ଆତ୍ମମର୍ଯ୍ୟାଦା ହରାଇ ନାହାନ୍ତି । ୧୦୦ ।

ସାମନ୍ତଙ୍କ ଅନେକ ପ୍ରତିମୂର୍ତ୍ତି ଦେଶର ବିଭିନ୍ନ ସ୍ଥାନରେ ସ୍ଥାପନ କରିବା ଉଚିତ । ରବୀନ୍ଦ୍ର ମଣ୍ଡପ ଭଳି ତାଙ୍କ ନାମରେ "ସାମନ୍ତ ଚନ୍ଦ୍ର ଶେଖର ମଣ୍ଡପ" ଗୋଟିଏ କରାଯିବା ବିଧେୟ । ବିଦ୍ୱାନ୍‌ଗଣକ ମାନଙ୍କର ସାମନ୍ତଙ୍କ ଗଣନା ମାର୍ଗ ପ୍ରଚାର କରିବା କର୍ତ୍ତବ୍ୟ । ସର୍ବଦା ତାଙ୍କର ମହନୀୟ ଗୁଣ ଗଣ ଓ ଜ୍ଞାନ ପ୍ରକର୍ଷ ସ୍ମରଣ କରିବା ବାଞ୍ଛନୀୟ । ୧୦୧ ।

CC-0. Prof. Satya Vrat Shastri Collection.

